# ମୋ ଗିରଫ୍‌ଦାରୀ

"ଇଣ୍ଡିଆ ମର୍ଟଗେଜ୍"ର ପ୍ରଥମ ଅଧ୍ୟାୟର ଅନୁଦିତ ଅଂଶ



ଟି. ନାଗି ରେଡ୍ଡି

# ମୋ ଗିରଫ୍‌ଦାରୀ

("ଇଣ୍ଡିଆ ମର୍ଟଗେଜ୍" ପୁସ୍ତକର ପ୍ରଥମ ଅଧ୍ୟାୟର ଅନୁଦିତ ଅଂଶ)




ଲେଖକ - ଟି. ନାଗି ରେଡ୍ଡି

ମୋ ଗିରଫ୍‌ଦାରୀ ("ଇଣ୍ଡିଆ ମର୍ଟଗେଜ୍" ପୁସ୍ତକର ପ୍ରଥମ ଅଧ୍ୟାୟର ଅନୂଦିତ ଅଂଶ)
ଲେଖକ - ଟି. ନାଗି ରେଡ୍ଡି।

୨୩ ମାର୍ଚ୍ଚ, ୨୦୦୬

**CONTACT :**

P.Jaswanta Rao
T.N. Memorial Trust
32 - 13 - 20/1
B.M Rao Road
Mogal Raja Puram
Vijayawada - 520010
Andhra Pradesh

ବହି ପାଇଁ ଯୋଗାଯୋଗ :

ତ୍ରିନାଥ ମହାରଣା
ଜନନାଟ୍ୟ ବିକାଶ ପରିଷଦ
କପିଳେଶ୍ୱରପୁର, ପୁରୀ -୭୫୨୦୪୩.

ଓ

Mythry Book House
Mazid Lane
Karl Marx Road
Vijayawada - 520002
Andhra Pradesh

Printed at 'PRAYAS', Puri.

ସହଯୋଗ - ପାଞ୍ଚଟଙ୍କା ମାତ୍ର।

# ପ୍ରକାଶକଙ୍କ ବକ୍ତବ୍ୟ

ଭାରତ ବର୍ଷର ଅନ୍ୟତମ କମ୍ୟୁନିଷ୍ଟ ବିପ୍ଳବୀ ନେତା କମ୍ରେଡ୍ ତାରିମେଲା ନାଗି ରେଡ୍ଡି (କମ୍ରେଡ୍ ଟି.ଏନ୍ ନାମରେ ସୁପରିଚିତ) ଆନ୍ଧ୍ର ପ୍ରଦେଶର ହାଇଦ୍ରାବାଦ ଅତିରିକ୍ତ ଦୌରାଜଜଙ୍କ ଅଦାଲତରେ 'ଇଣ୍ଡିଆ ମର୍ଟଗେଜ୍' (India Mortgaged) ଶୀର୍ଷକ ଯେଉଁ ବକ୍ତବ୍ୟ ଉପସ୍ଥାପନ କରିଥିଲେ ଏଇ ପୁସ୍ତିକାଟି ତାର ସୂଚନାର ଅଂଶବିଶେଷ।

୧୯୬୯ ମସିହାରେ ଆନ୍ଧ୍ରପ୍ରଦେଶ ସରକାର ଏ.ପି.ସି.ସି.ସି.ଆର (AndraPradesh Co-ordination Committee of Communist Revolutionaries) ନେତୃତ୍ୱାଧିନ କମ୍ୟୁନିଷ୍ଟ ବିପ୍ଳବୀ ମାନଙ୍କ ବିରୁଦ୍ଧରେ ଭାରତୀୟ ଦଣ୍ଡବିଧି ଆଇନିର ୧୨୦(କ) ଓ ଅନ୍ୟାନ୍ୟ ଧାରାରେ ନାନା ମିଥ୍ୟା ମୋକଦ୍ଦମା ଆଗତ କରନ୍ତି। ଅଭିଯୋଗ ହୁଏ ଯେ କମ୍ରେଡ୍ ଟି.ଏନ୍, କମ୍ରେଡ୍ ଡି.ଭି ଓ ଅନ୍ୟାନ୍ୟ କମ୍ୟୁନିଷ୍ଟ ବିପ୍ଳବୀମାନେ ଅସାମ୍ବିଧାନିକ, ଅଗଣତାନ୍ତ୍ରିକ ଓ ସହିଂସ ଉପାୟରେ ସାମ୍ବିଧାନିକ ଓ ଗଣତାନ୍ତ୍ରିକ ପଦ୍ଧତିରେ ପ୍ରତିଷ୍ଠିତ ଭାରତ ସରକାରକୁ ଉତ୍‌ଖାତ କରିବା ପାଇଁ ଷଡ଼ଯନ୍ତ୍ର ମୂଳକ ପ୍ରଚେଷ୍ଟା ଚଳାଇଛନ୍ତି। କମ୍ରେଡ୍ ଟି. ଏନ୍ ଏବଂ ଏ.ପି.ସି.ସି.ସି.ଆର. ର ଅନ୍ୟାନ୍ୟ ନେତୃସ୍ଥାନୀୟ କମ୍ରେଡ୍‌ମାନେ ଏହି ଅଭିଯୋଗ ବିରୁଦ୍ଧରେ ରାଜନୈତିକ ସଂଗ୍ରାମ ଚଳାଇ ରଖନ୍ତି। ଏକ ସଙ୍ଗେ ମାର୍କ୍ସବାଦ, ଲେନିନ୍‌ବାଦ ଓ ମାଓ ସେ ତୁଂ ଚିନ୍ତାଧାରା ଏବଂ ନୂଆ ଗଣତାନ୍ତ୍ରିକ ବିପ୍ଳବର କର୍ମସୂଚୀ, ରାଜନୀତି ଓ ତାର ପ୍ରୟୋଗ ରୀତି-ପଦ୍ଧତି ବ୍ୟାଖ୍ୟା କରି ତାର ସମର୍ଥନରେ ବକ୍ତବ୍ୟ ରଖିଥିଲେ। ଏଇ ସୁଯୋଗରେ ଭାରତୀୟ ଶାସକଶ୍ରେଣୀ ଯେଉଁ ଜନବିରୋଧୀ ନୀତିକୁ ଭିତ୍ତିକରି ତା'ର ଶାସନକୁ ଚଳାଇ ରଖିଛନ୍ତି ତାର ସ୍ୱରୂପ ଉଦ୍‌ଘାଟନ କରିବା ପାଇଁ ବିଚାରାଳୟକୁ ରାଜନୈତିକ ମଞ୍ଚ ହିସାବରେ ବ୍ୟବହାର କରିଥିଲେ। ଜେଲ୍‌ରେ ଥିବା ସମୟରେ ଟି.ଏନ୍ 'ଇଣ୍ଡିଆ ମର୍ଟଗେଜ୍' ଶୀର୍ଷକ ଯେଉଁ ବକ୍ତବ୍ୟ ପ୍ରସ୍ତୁତ କରି ଅଦାଲତରେ ପେଶ୍ କରିଥିଲେ ସେଥିରେ ସେ ମାର୍କ୍ସବାଦ-ଲେନିନ୍‌ବାଦ ଓ ମାଓ ସେ ତୁଂ ଚିନ୍ତାଧାରାର ଆଧାରରେ ଭାରତୀୟ ପରିସ୍ଥିତି ଏବଂ ତାର ଶାସକଶ୍ରେଣୀ ଦ୍ୱାରା ଅନୁସୃତ ନୀତି, ତାର ପ୍ରୟୋଗ କୌଶଳକୁ ପ୍ରଚୁର ତଥ୍ୟ ସାହାଯ୍ୟରେ ବିଶ୍ଳେଷଣ କରିବା ସହିତ ନୂଆ ଗଣତାନ୍ତ୍ରିକ ବିପ୍ଳବର କର୍ମସୂଚୀ ଓ କର୍ତ୍ତବ୍ୟ ଅତ୍ୟନ୍ତ ପ୍ରାଞ୍ଜଳଭାବେ ଉପସ୍ଥାପିତ କରିଥିଲେ।

"ଇଣ୍ଡିଆ ମର୍ଟଗେଜ୍"ର ଏଇ ଅଂଶରେ କମ୍ରେଡ୍ ଟି.ଏନ୍ ଭାରତୀୟ ବୁର୍ଜୁଆ କିଭଳି ଏକ ନିର୍ଦ୍ଦିଷ୍ଟ ଐତିହାସିକ ପର୍ଯ୍ୟାୟରେ ଗଣତାନ୍ତ୍ରିକ ବିପ୍ଳବର ନେତୃତ୍ୱ ନେବାର କାର୍ଯ୍ୟରୁ ନିବୃତ ହେଲା ତଥା ଗଣତାନ୍ତ୍ରିକ ବିପ୍ଳବର ନେତୃତ୍ୱନେବାର କର୍ତ୍ତବ୍ୟ ପ୍ରତି ବେଇମାନି କଲା, ତାହା ବିଶଦଭାବରେ ବ୍ୟାଖ୍ୟା କରିଛନ୍ତି। ସେ ଦେଖାଇଛନ୍ତି ଯେ

କିପରି ଭାରତୀୟ ବୁର୍ଜୁଆଶ୍ରେଣୀ ବ୍ରିଟିଶ୍ ଉପନିବେଶିକ ଶାସନ ବିରୁଦ୍ଧରେ ଜାତୀୟ ଆନ୍ଦୋଳନର ନେତୃତ୍ୱନେବା ପରିବର୍ତ୍ତେ ସେଇ ଆନ୍ଦୋଳନ ପ୍ରତି ବିଶ୍ୱାସ ଘାତକତା କରି ଉପନିବେଶିକ ଶାସକବର୍ଗ ସହ ଗୋପନରେ ସାଲିସ କରିଛନ୍ତି । ସାମ୍ବିଧାନିକ ଓ ଗଣତାନ୍ତ୍ରିକ ଉପାୟରେ ସରକାର ପ୍ରତିଷ୍ଠିତ ହୋଇଛି ବୋଲି ଭାରତୀୟ ଶାସକଶ୍ରେଣୀର ଦାବୀକୁ ପ୍ରତ୍ୟାଖ୍ୟାନ କରି ସେ ବଳିଷ୍ଠ ଯୁକ୍ତି ଉତ୍‌ଥାପନ କରିବା ସଙ୍ଗେ ସଙ୍ଗେ ସେ ଦେଖାଇଛନ୍ତି ଯେ କିଭଳି ଭାରତୀୟ ଶାସକଶ୍ରେଣୀ ନିର୍ଲ୍ଲଜ ଭାବରେ ଉପନିବେଶିକ ଆଇନି କାନୁନ୍‌କୁ ସେହି ସମାନ ଢାଞ୍ଚାରେ ବର୍ତ୍ତମାନ ମଧ୍ୟ ଚଳାଇ ରଖିଛନ୍ତି । କେବଳ ସେତିକି ନୁହେଁ ସେ ସବୁ ଆଇନି କାନୁନ୍ ଗଣତାନ୍ତ୍ରିକ ଦେଶପ୍ରେମୀ ଓ କମ୍ୟୁନିଷ୍ଟ ବିପ୍ଲବୀ ତଥା ଶ୍ରମଜୀବୀ ଜନତାଙ୍କୁ ଦମନ କରିବା କାର୍ଯ୍ୟରେ କିପରି ବ୍ୟବହାର କରାଯାଉଛି ତାହା ଦେଖାଇଛନ୍ତି । ସେ ଯୋର୍ ଦେଇ କହିଛନ୍ତି ଯେ ସାମ୍ରାଜ୍ୟବାଦୀ ଶୋଷଣରୁ ଦେଶକୁ ମୁକ୍ତି ନକରିବା ପର୍ଯ୍ୟନ୍ତ; ଭାରତରେ ଏକ ପ୍ରକୃତ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରତିଷ୍ଠା ନ ହେବା ପର୍ଯ୍ୟନ୍ତ; ଦେଶ ଓ ଜନଗଣଙ୍କର ଉନ୍ନତି ଓ ପ୍ରଗତିର ପଥ ଉନ୍ମୁକ୍ତ ନକଲା ପର୍ଯ୍ୟନ୍ତ ଏ ସଂଗ୍ରାମ ଚଳାଇ ରଖିବାକୁ ହେବ । ବିଗତ ବର୍ଷମାନଙ୍କରେ ଆମଦେଶର ଜନଗଣଙ୍କର ଅଭିଜ୍ଞତାରେ କମ୍ରେଡ୍ ଟି.ଏନ୍‌ଙ୍କର ବିଶ୍ଳେଷଣ ଯଥାର୍ଥ ପ୍ରମାଣିତ ହୋଇଛି । ଭାରତୀୟ ଶାସକଶ୍ରେଣୀ ସାମ୍ରାଜ୍ୟବାଦ ବିଶେଷ କରି ଆମେରିକା ସାମ୍ରାଜ୍ୟବାଦ ନିକଟରେ ନିର୍ଲ୍ଲଜ ଭାବରେ ନିଜର ମୁଣ୍ଡ ବିକ୍ରୀ କରି ଗଣତାନ୍ତ୍ରିକ ଆଦର୍ଶ ଓ ତାର ପ୍ରୟୋଗକୁ କେବଳ ନିଛକ ପରିହାସରେ ପରିଣତ କରିନାହିଁ ବରଂ ଦେଶର ଜନଗଣଙ୍କ ନିକଟରେ ବିଶ୍ୱାସଘାତକତା କରିଛି ।

## ଆମ ସମ୍ପର୍କରେ କିଛି :

ଭାରତୀୟ ବିପ୍ଲବୀ କମ୍ୟୁନିଷ୍ଟ ଆନ୍ଦୋଳନରେ କମ୍ରେଡ୍ ଟି. ନାଗିରେଡ୍ଡି ଏକ ଜଣାଶୁଣା ନାମ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ (B.H.U) ରେ ଅଧ୍ୟୟନ କରୁଥିବା ସମୟରେ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହୁଅନ୍ତି । ଛାତ୍ର ଆନ୍ଦୋଳନ ସହ ଜଡ଼ିତ ହୋଇ ବିଶ୍ୱବିଦ୍ୟାଳୟରୁ ବହିଷ୍କୃତ ହୁଅନ୍ତି । ପରବର୍ତ୍ତୀ ସମୟରେ ଐତିହାସିକ ତେଲେଙ୍ଗାନା ଆନ୍ଦୋଳନର ସେ ଥିଲେ ଅନ୍ୟତମ ପ୍ରମୁଖ ନେତା । କମ୍ୟୁନିଷ୍ଟ ଆନ୍ଦୋଳନରେ ଜଡ଼ିତ ହୋଇ ତାଙ୍କୁ ଅନେକବାର କାରାବରଣ କରିବାକୁ ପଡ଼ିଛି । ସଂଶୋଧନବାଦ ଓ ନବ୍ୟସଂଶୋଧନବାଦ ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନକୁ ବାରମ୍ବାର ଦିଗଭ୍ରଷ୍ଟ କରିଛି । ନକ୍ସଲବାଡି ଆନ୍ଦୋଳନ ସମୟରେ ସି.ପି.ଆଇ ଓ ସି.ପି.ଏମ୍ ର ଏହି ସଂଶୋଧନବାଦୀ ରାଜନୀତି ବିରୁଦ୍ଧରେ ରାଜନୈତିକ ଓ ମତାଦର୍ଶଗତ ଲଢେଇ ଜାରିରଖି କମ୍ୟୁନିଷ୍ଟ

ବିପ୍ଳବୀମାନଙ୍କ ଆନ୍ଦୋଳନର ନେତୃତ୍ୱ ନିଅନ୍ତି । ଏ.ପି.ସି.ସି.ସି.ଆର୍ (AndraPradesh Co-ordination Committee of Communist Revolutionaries)ର ଆବାହକ ଭାବେ ସାରା ଭାରତର କମ୍ୟୁନିଷ୍ଟ ବିପ୍ଳବୀମାନଙ୍କୁ ଏକାଠିକରି ଏକ ଐକ୍ୟବଦ୍ଧ ଆନ୍ଦୋଳନ ଗଢିତୋଳିବା ପାଇଁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ପ୍ରଚେଷ୍ଟା ଜାରିରଖନ୍ତି । ଅନ୍ୟପଟରେ କମ୍ୟୁନିଷ୍ଟ ଆନ୍ଦୋଳନକୁ ଗୁରୁତର କ୍ଷତି ପହଞ୍ଚାଇଥିବା ବ୍ୟକ୍ତିଗତ ସନ୍ତ୍ରାସବାଦ (Individual Terrorism)ବିରୁଦ୍ଧରେ ସମାନଭାବରେ ତାଙ୍କର ମତାଦର୍ଶଗତ ଲଢେଇ ଚଳାଇ ରଖନ୍ତି ।

ଗୁରୁତର ସ୍ୱାସ୍ଥ୍ୟହାନୀ କାରଣରୁ ୧୯୭୬ ମସିହା ଜୁଲାଇ ୧୮ ତାରିଖରେ ଅଣ୍ଡରଗ୍ରାଉଣ୍ଡରେ ଥିବା ସମୟରେ କମ୍ରେଡ୍ ଟି.ଏନ୍ ଶେଷ ନିଶ୍ୱାସ ତ୍ୟାଗ କଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ବିପ୍ଳବୀ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । କମ୍ରେଡ୍ ଟି.ଏନ୍‌ଙ୍କର ଭାବଧାରା ଓ ବିଶ୍ୱ ଦୃଷ୍ଟିଭଙ୍ଗୀ ଅର୍ଥାତ୍ ମାର୍କ୍ସବାଦ୍ ଲେନିନ୍‌ବାଦ୍ ଓ ମାଓ ସେ ତୁଂ ଚିନ୍ତାଧାରା, ସାହିତ୍ୟ, ସଂସ୍କୃତି ଓ ଶିକ୍ଷା ମାଧ୍ୟମରେ ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ ୧୯୭୮ ମସିହାରେ ତାରିମେଲା ନାଗି ରେଡ୍ଡି ମେମୋରିଆଲ୍ ଟ୍ରଷ୍ଟ ଗଠିତ ହୁଏ । କମ୍ରେଡ୍ ଟି.ଏନ୍ ଙ୍କର ସହଧର୍ମିଣୀ କମ୍ରେଡ୍ ଲକ୍ଷ୍ମୀକାନ୍ତା ଏଇ ଟ୍ରଷ୍ଟର ପ୍ରତିଷ୍ଠାତ୍ରୀ ସଦସ୍ୟା । ଏଇ ଟ୍ରଷ୍ଟ ତରଫରୁ କମ୍ରେଡ୍ ଟି.ଏନ୍‌ଙ୍କର ଜୀବନୀ, ମତାଦର୍ଶ ଓ ଅନ୍ୟାନ୍ୟ ମାର୍କ୍ସବାଦୀ-ଲେନିନ୍‌ବାଦୀ ଲେଖା ସମୂହକୁ ବିଭିନ୍ନ ଭାଷାରେ ପ୍ରଚାର ଓ ପ୍ରସାର କରିବା ପାଇଁ ଉଦ୍ୟମ ଜାରି ରହିଛି ।

'ଇଣ୍ଡିଆ ମର୍ଟଗେଜ୍' ନାମରେ ଇଂରାଜୀରେ (ତିନିଖଣ୍ଡ) ଏବଂ ତେଲୁଗୁ ଭାଷାରେ (ଦୁଇଖଣ୍ଡ) ପୁସ୍ତକମାନ ପ୍ରକାଶିତ ହୋଇ ସାରିଛି । ଏଇ ଟ୍ରଷ୍ଟ ତରଫରୁ ମାର୍କ୍ସବାଦ ଓ ସାରା ବିଶ୍ୱର ବିପ୍ଳବୀ ଅଭିଜ୍ଞତା ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ ବିଭିନ୍ନ ବିଷୟରେ ୩୦ରୁ ଊର୍ଦ୍ଧ୍ୱ ପୁସ୍ତକ ପ୍ରକାଶ ହୋଇସାରିଛି । ଆମର ଏଇ ପ୍ରଚେଷ୍ଟା ଭବିଷ୍ୟତରେ ଅବ୍ୟାହତ ରଖିବାର ଚେଷ୍ଟା କରିବୁ ।

ଭାରତ ବର୍ଷର ଅନ୍ୟାନ୍ୟ ଭାଷାରେ 'ଇଣ୍ଡିଆ ମର୍ଟଗେଜ୍' ବହି ଖଣ୍ଡିକ ପ୍ରକାଶ କରିବାର ଇଛା ଦୀର୍ଘଦିନଧରି ପୋଷଣ କରିଆସିଛୁ । ନାନା ଅସୁବିଧା କାରଣରୁ ପ୍ରଧାନତଃ ଅନୁବାଦର ଅସୁବିଧା କାରଣରୁ ଆମେ ତାହା କରିପାରିନାହୁଁ ।

ଏହି ପୁସ୍ତିକାଟି ଓଡ଼ିଆରେ ପ୍ରକାଶିତ କରି ଆମେ ଖୁବ୍ ଆନନ୍ଦିତ । ଅନୁବାଦ ପାଇଁ କମ୍ରେଡ୍ ଅଶୋକ ଦାସ ଓ କମ୍ରେଡ୍ କୁଞ୍ଜବିହାରୀ ଉପାଧ୍ୟାୟଙ୍କ ସହଯୋଗ ପାଇଁ ଅଶେଷ ଧନ୍ୟବାଦ । ପାଠକ କମ୍ରେଡ୍ ମାନଙ୍କଠାରୁ ମୂଲ୍ୟବାନ ମତାମତ ଓ ପରାମର୍ଶ କାମନାକରୁ । ଏଥିରେ ଆମର ପ୍ରଚେଷ୍ଟା ସାର୍ଥକ ହେବ ।

*ତାରିମେଲା ନାଗି ରେଡ୍ଡି ମେମୋରିଆଲ ଟ୍ରଷ୍ଟ*

# ମୋ ଗିରଫ୍‌ଦାରୀ

ମଜାର କଥା ହେଲା ୧୯୪୦ ମସିହାରେ ମୁଁ ପ୍ରଥମେ ବ୍ରିଟିଶ୍ ସରକାର ହାତରେ ଗିରଫ ହେଲି। ଏହା ମଧ୍ୟ ଉଲ୍ଲେଖ ଯୋଗ୍ୟ ଯେ ସେତେବେଳେ ମୋତେ ଭାରତୀୟ ଦଣ୍ଡବିଧି ଆଇନି ଅନୁଯାୟୀ ଏକ ବର୍ଷ ସଶ୍ରମ କାରାବାସ ଭୋଗିବାକୁ ପଡ଼ିଥିଲା। ଘଟଣାଟି ଏଭଳି କୁହାଯାଇପାରେ ଯେ ତତ୍କାଳୀନ ଉପନିବେଶିକ ସରକାରର ବଦାନ୍ୟତା ଯୋଗୁଁ, ସେ ବର୍ଷ ଜଣେ କମ୍ୟୁନିଷ୍ଟ ହିସାବରେ ମୋର ସକ୍ରିୟ ରାଜନୈତିକ ଜୀବନର ଅୟମାରମ୍ଭ ହୁଏ।

ତା'ପରଠାରୁ ମୁଁ ଅନେକ ବାର ଜେଲ୍ ଯାଇଛି ଓ ବାହାରିଛି। ନିମ୍ନ ପ୍ରଦତ୍ତ ଘଟଣା ପ୍ରବାହ ଅଦଲାତ ସାମ୍ନାରେ ଏକ ଭାବନା ସୃଷ୍ଟିକରିବ ଯେ, କିଭଳି ପରବର୍ତ୍ତୀ ସରକାର ଗୁଡ଼ିକ ମୋତେ ଜଣେ କଟ୍ଟର ଅପରାଧୀ ଭାବେ ଧରିନେଇଛନ୍ତି।

**୧୯୪୦** - "ଅର୍ଥନୀତି ଉପରେ ଯୁଦ୍ଧର ପ୍ରଭାବ" (Economic effects of war) ପୁସ୍ତିକା ପ୍ରକାଶ କରିବାରୁ ଏକ ବର୍ଷ ସଶ୍ରମ କାରାଦଣ୍ଡ।

**୧୯୪୧** - ଉପରୋକ୍ତ ସଜା ଶେଷ ହେବାପରେ ଜେଲ୍ ଫାଟକ ନିକଟରୁ ଭାରତ ରକ୍ଷା ଆଇନିରେ ମୋର ପୁନର୍ବାର ଗିରଫ ଏବଂ ପରେ ତିରୁଚିରାପଲ୍ଲୀ ଜେଲ୍‌ରୁ ମୁକ୍ତି।

**୧୯୪୬** - କଂଗ୍ରେସ ସରକାର ଦ୍ୱାରା "ପ୍ରକାଶମ୍ ଅଧ୍ୟାଦେଶ" ନାମକ ଆଇନି ବଳରେ ମୋତେ ଗିରଫ ଓ ଅଟକ। ୧୯୪୭ରେ ମୁକ୍ତି।

**୧୯୫୧** - ଚାରି ବର୍ଷ ଆତ୍ମଗୋପନ ଜୀବନ ବିତାଇବା ପରେ, ପ୍ରଥମ ସାଧାରଣ ନିର୍ବାଚନ ପୂର୍ବରୁ ଗିରଫ ଓ ଅଟକ।

**୧୯୫୫** - ମଧ୍ୟବର୍ତ୍ତୀ ନିର୍ବାଚନ ସମୟରେ ୧୪୪ ଧାରା ଭଙ୍ଗ ଅଭିଯୋଗରେ ଗିରଫ।

**୧୯୬୨** - ଭାରତ ରକ୍ଷା ଆଇନି ବଳରେ ଗିରଫ।

**୧୯୬୪** - ଡ଼ିସେମ୍ବର ମାସରେ ଗିରଫ ଓ ଭାରତ ରକ୍ଷା ଆଇନି ବଳରେ ଅଟକ।

**୧୯୬୯** - ସେପ୍ଟେମ୍ବର ମାସରେ ପ୍ରତିଷେଧକ ମୂଳକ ଅଟକ ଆଇନି ବଳରେ ବନ୍ଦୀ। ଡ଼ିସେମ୍ବର ୧ ତାରିଖରେ ହାଇକୋର୍ଟ ଆଦେଶରେ ଖଲାସ।

**୧୯୬୯** - ଡ଼ିସେମ୍ବର ୧୯ରେ ପୁନର୍ବାର ମାଡ୍ରାସଠାରେ ଗିରଫ ଏବଂ ଭାରତୀୟ ଦଣ୍ଡବିଧି ଆଇନିର ୧୨୧ ସମେତ ଅନ୍ୟାନ୍ୟ ଧାରାରେ ଅଭିଯୋଗ ପତ୍ର ଦାଖଲ।

୧୮୬୦ ମସିହାରେ ପ୍ରଣିତ ଭାରତୀୟ ଦଣ୍ଡବିଧି ଆଇନ୍ ଦ୍ୱାରା ମୁଁ ୧୯୪୦ ମସିହା ଓ ପୁର୍ନବାର ସେହି ଆଇନି ଦ୍ୱାରା ୧୯୬୯ ମସିହାରେ ଗିରଫ ହେବା ମୋର ଗିରଫଦାରୀର ଏକ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ।

ଏହି ଚାରିତ୍ରିକ ବୈଶିଷ୍ଟ୍ୟର ତାତ୍ପର୍ଯ୍ୟ କ'ଣ ?

ମାର୍କ୍ସ ତାଙ୍କର  ଦି ଏଇଟିନ୍‌ଥ ବ୍ରୁମେରାୟ ଅଫ୍ ଲୁଇ ବୋନାପାର୍ଟ ("The Eighteenth Brumaire of Louise Bonaparte") ରଚନାରେ କହିଛନ୍ତି ବିପ୍ଳବ ମାଧ୍ୟମରେ ସମସ୍ତ ମଣିଷ ତାର କାର୍ଯ୍ୟଦକ୍ଷତା ବୃଦ୍ଧିର ଯେଉଁ କଳ୍ପନା କରିଥିଲା, ତାହା  ଏକ ବିଷମ ଧକ୍କା ଖାଇଲା; ସେ ଦେଖିବାକୁ ପାଇଲା, ଯାହା ପୁରାତନ ଯୁଗର ମୃତ ଓ ଅଚଳ ବୋଲି ମନେ ହେଉଥିଲା, ଯେଉଁ ସବୁ ଋଟୁକାରମାନେ ମୃତ ଓ ଅବଲୁପ୍ତ ମନେହେଉଥିଲେ ସେ ସବୁର ପୁନଃଆବିର୍ଭାବ ଘଟିଛି"। (An entire people which had imagined that by a revolution, it had its power of action, suddenly finds itself setback into a dead epoch and, in order that no doubts as to the relapse may be possible, the old date again and again the old names, the old edicts which have long become subject of antiquitarian erudition and the old henchmen who had long seemed dead and decayed.)

ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ ଯେ ତଥାକଥିତ ସ୍ୱାଧିନତା ପ୍ରାପ୍ତିର ୨୫ ବର୍ଷପରେ  ୧୦୦ବର୍ଷରୁ ଉର୍ଦ୍ଧ୍ୱ ଅର୍ଥାତ ୧୮୬୦ ମସିହାରେ ପ୍ରଣିତ ଏକ ଆଇନି ଦ୍ୱାରା ମୁଁ ଗିରଫ ହୋଇଥିଲି । "ମହାତ୍ମାଙ୍କର" ସିଧାସଳଖ ନେତୃତ୍ୱରେ ଜାତୀୟ କଂଗ୍ରେସ ଦ୍ୱାରା ପରିଚାଳିତ ତଥାକଥିତ 'ଅଂହିସା-ବିପ୍ଳବ'  ଏବଂ ତାପର ୧୫ବର୍ଷରୁ ଅଧିକ ସମୟ ଧରି ତାଙ୍କର ଶରଣାଗତ ଜବାହାରଲାଲ ନେହେରୁଙ୍କର ପ୍ରଶ୍ନହୀନ ଶାସନ କାଳରେ ଭାରତବର୍ଷକୁ ପ୍ରଗତିର ଯୁଗକୁ ନେବା ପରିବର୍ତ୍ତେ ସମସ୍ତ ପୁରୁଣା ଆଇନି କାନୁନ୍ ଓ ଋଟୁକାରଙ୍କୁ ନେଇ ଏକ ମୃତବତ୍ ସ୍ଥାଣୁ ଯୁଗରେ କାହିଁକି ଓ କିପରି ପହଞ୍ଚିଲା ? ରାଜନୈତିକ କର୍ତ୍ତୃତ୍ୱର ବାହ୍ୟିକ ପରିବର୍ତ୍ତନ ହୁଏତ ଘଟିଛି ମାତ୍ର ତାଦ୍ୱାରା ଆମ ଦେଶର ସାମାଜିକ ବା ଅର୍ଥନୈତିକ ଢ଼ାଞ୍ଚାରେ ବିନ୍ଦୁମାତ୍ର ମୌଳିକ ପରିବର୍ତ୍ତନ ଘଟିନି। ଗ୍ରାମାଞ୍ଚଳରେ ସାମ୍ରାଜ୍ୟବାଦୀ ଶୋଷଣ ଓ ହିଂସ୍ରତା ଆହୁରି ତୀବ୍ରଆକାର ଧାରଣ କରିଛି। ମୌଳିକ ଭାବେ ଦେଶର ପ୍ରଶାସନିକ ବ୍ୟବସ୍ଥା ସମସ୍ତ ପ୍ରକାର ପୁରୁଣା ଆଇନି କାନୁନ୍ ସହ ପୂର୍ବ ଭଳି ରହିଛି।

ଗୁନ୍ନାର ମିର୍ଡାଲ (Gunnar Myrdal) ଏ ପ୍ରସଙ୍ଗରେ କହିଛନ୍ତି ଯେ, ଉପନିବେଶିକ ବ୍ୟବସ୍ଥାର ବିଘଟନ ଓ ସ୍ୱାଧୀନ ଜାତୀୟ ରାଷ୍ଟ୍ରଗୁଡ଼ିକର ଆବିର୍ଭାବର ଅର୍ଥ ନୁହେଁ ଯେ, ପ୍ରାକ୍ତନ ଉପନିବେଶିକ ଦେଶ ଗୁଡ଼ିକରେ ପ୍ରଭୂତ ଆର୍ଥ-ସାମାଜିକ ପରିବର୍ତ୍ତନ ସଂଗଠିତ ହୋଇଛି। "ଏହା ସ୍ପଷ୍ଟଭାବେ ମନେ ରଖିବା ଆବଶ୍ୟକ ଯେ ଦକ୍ଷିଣ ଏସିଆର ଦେଶ ଗୁଡ଼ିକର ବର୍ତ୍ତମାନ ଅର୍ଥନୈତିକ ଓ ସାମାଜିକ ଅବସ୍ଥା, ବିଘଟନ-ପୂର୍ବ ଉପନିବେଶିକ ବ୍ୟବସ୍ଥାଠାରୁ ବିଶେଷ କିଛି ଭିନ୍ନ ନୁହେଁ।" (Asian Drama-Gunnar myrdal-page-9)

ଭାରତର ଜନଗଣ ଯେଉଁମାନେ ଭାରତୀୟ ବୁର୍ଜୁଆର ଜାତୀୟ ନେତୃତ୍ୱର ସାମ୍ରାଜ୍ୟବାଦ ବିରୋଧୀ ଦୃଷ୍ଟିଭଙ୍ଗିକୁ(ଲଢେଇକୁ) ଅସଲ ବୋଲି ଧରିନେଇଥିଲେ ସେହିମାନେ ହିଁ ପ୍ରତାରିତ ହୋଇଛନ୍ତି ।

କାହିଁକି ଓ କିପରି ଏହାଘଟିଲା ?

## ବୁର୍ଜୁଆ ଶ୍ରେଣୀ ଓ ବୁର୍ଜୁଆ ଗଣତାନ୍ତିକ ବିପ୍ଳବ

କୌଣସି ମାର୍କ୍ସବାଦୀ ପାଇଁ ବୁର୍ଜୁଆ ଶ୍ରେଣୀର ଏହି ଧରଣର ବିଶ୍ୱାସ ଘାତକତା କିଛି ଆଶ୍ଚର୍ଯ୍ୟ ଜନକ ନୁହେଁ । ୧୯୦୫ ମସିହାରେ ଲେନିନ୍ କହିଥିଲେ ଯେ, ସାମ୍ରାଜ୍ୟବାଦ ଓ ସର୍ବହରା ବିପ୍ଳବ ଯୁଗରେ ବୁର୍ଜୁଆ ଶ୍ରେଣୀ ଗଣତାନ୍ତିକ ବିପ୍ଳବର କାର୍ଯ୍ୟଟିକୁ ସମ୍ପୂର୍ଣ୍ଣ କରିବ ନାହିଁ, କି କରି ପାରିବ ନାହିଁ ।

ସେ କହିଥିଲେ; "ବୁର୍ଜୁଆ ବିପ୍ଳବ ସୁନିର୍ଦ୍ଦିଷ୍ଟ ଭାବେ ଏକ ଅଭ୍ୟୁତ୍‌ଥାନ, ଯାହା ଅତୀତର ସମସ୍ତ ଅବଶେଷ ଏବଂ ଭୂମିଦାସ ମାଲିକାନା ବ୍ୟବସ୍ଥାକୁ ଦୃଢତାର ସହିତ ପରିଷ୍କାର ଭାବେ ସଫା କରିଦେଇଥାଏ" । କିନ୍ତୁ ଲେନିନ୍ ସ୍ପଷ୍ଟଭାବେ ସୂଚାଇଦେଇଥିଲେ ଯେ, "ବୁର୍ଜୁଆଶ୍ରେଣୀ ନିଜ ସତ୍ତାପ୍ରତି ବିଶ୍ୱାସ ଘାତକତା କରିଥାଏ ଏବଂ ଉକ୍ତ ଶ୍ରେଣୀ ଅବିଚଳ ଭାବେ ଗଣତାନ୍ତିକ ହୋଇରହିବା ଅସମ୍ଭବ ।"

"ବୁର୍ଜୁଆ ଶ୍ରେଣୀ ପକ୍ଷରେ ବୁର୍ଜୁଆ ଗଣତନ୍ତ୍ର ପ୍ରତିଷ୍ଠା ଲକ୍ଷ୍ୟରେ ଅତ୍ୟନ୍ତ ଧିର ଗତିରେ, କ୍ରମେ କ୍ରମେ, ଅତ୍ୟନ୍ତ ସତର୍କତା ସହିତ ଗତାନୁଗତିକ ଭାବେ, କୌଣସି ପ୍ରକାର ବୈପ୍ଳବିକ ପରିବର୍ତ୍ତନ ନ ଘଟାଇ କିଛି ସଂସ୍କାର ମାଧ୍ୟମରେ ଆବଶ୍ୟକୀୟ ପରିବର୍ତ୍ତନ ଆଣିବା ବିଶେଷ ସୁବିଧାଜନକ ।" (It is of greater advantage to the bourgeoisie of the necessary changing in the direction of bourgeoisie democracy take place more slowly, less resolutely by means of reforms and not by the means of revolution.) [Two Tactics Of Social Democracy, page -77]

ବୁର୍ଜୁଆଶ୍ରେଣୀ ବୁର୍ଜୁଆ ଗଣତାନ୍ତିକ ବିପ୍ଳବକୁ ଡରେ କାହିଁକି ? ଅତୀତର ଅବଶେଷକୁ ଝାଡୁମାରି ପରିଷ୍କାର କରିବାକୁ ସେ କାହିଁକି ବିରୋଧ କରେ ? କାହିଁକି ପ୍ରାଚୀନ ଭୂମିଦାସ-ମାଲିକାନା ପ୍ରଥାର ଦୁର୍ବଳ ବ୍ୟବସ୍ଥାକୁ ଯଥା ସମ୍ଭବ କୌଣସି ପରିବର୍ତ୍ତନ ନଘଟାଇ ବଞ୍ଚାଇ ରଖିବାକୁ ଚାହେଁ? କାରଣ ବୁର୍ଜୁଆଶ୍ରେଣୀ ଭୟକରେ ଯେ, କାଳେ କୃଷକ ଓ ଶ୍ରମିକ ଭୂମିଦାସ-ମାଲିକାନା ପ୍ରଥାର ଅବସାନ ଘଟାଇବା ସହ ଏକ କାନ୍ଧରୁ ଅନ୍ୟକାନ୍ଧକୁ ବନ୍ଧୁକ ବଦଳ କରି ଆହୁରି ଆଗକୁ ଅଗ୍ରସର ହୋଇ ସେଇ ଏକା ନ୍ୟାୟରେ ବୁର୍ଜୁଆ ସଂପତ୍ତିର ମାଲିକାନାର ଅବସାନ ଘଟାଇବ ।

ତେଣୁ ସେ ସତର୍କ କରାଇ କହିଥିଲେ ଯେ, ବୁର୍ଜୁଆ ଏକ "ଘୃଣ୍ୟ କାରବାର"

(Wretched deal)ରେ ଲିପ୍ତ ହେବ ଓ ସେ "ଚୂଡ଼ାନ୍ତ" ବିଜୟ ହାସଲ ପାଇଁ ଅସାମର୍ଥ୍ୟ ହେବ, ବରଂ "ସେ ଚୂଡ଼ାନ୍ତ ବିଜୟ ଲାଭ ପାଇଁ ଆଗ୍ରହୀ ନୁହଁ।" "ତା ପାଇଁ ଜାରତନ୍ତ୍ର ବିଶେଷ ଆବଶ୍ୟକ। କାରଣ ତାର ଅମଲାତାନ୍ତ୍ରିକ ବାହିନୀ, ପୁଲିସ୍ ଓ ସାମରିକ ଶକ୍ତିକୁ ସର୍ବହରା ଶ୍ରେଣୀ ଓ କୃଷକ ଶ୍ରେଣୀର ବିନାଶ ପାଇଁ ବ୍ୟବହାର କରିପାରିବ" (ଲେଲିନ୍ ନିର୍ବାଚିତ ରଚନାବଳୀ, ପୃଷ୍ଠା-୮୧)। ସେଇଥିପାଇଁ "ଅନିର୍ବାଯ୍ୟ ଭାବେ ଯେତେବେଳେ ବୁର୍ଜୁଆଶ୍ରେଣୀର ଆତ୍ମସ୍ୱାର୍ଥ ରକ୍ଷାର ରାସ୍ତା ସଂକୀର୍ଣ୍ଣ ହୋଇଉଠିବ, ସେତେବେଳେ ସେ ପ୍ରଥାଗତ ଗଣତାନ୍ତ୍ରିକ ବ୍ୟବସ୍ଥାରୁ ନିଜକୁ ଦୂରେଇ ନେଇ ପ୍ରତି ବିପ୍ଳବୀ ପନ୍ଥା ତଥା ସ୍ୱୈରତନ୍ତ୍ରୀ ହେବା ସହ ବିପ୍ଳବ ତଥା ଜନଗଣଙ୍କ ବିରୁଦ୍ଧରେ ସକ୍ରିୟ ହୋଇଉଠିବ।" (ପୃ-୧୧୫)

"ଏଇ କାରଣରୁ ବୁର୍ଜୁଆଶ୍ରେଣୀ ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବକୁ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚାଇବା ପାଇଁ ଅକ୍ଷମ।"(ପୃ-୧୧୬)

'ବୁର୍ଜୁଆ ନିଜ ପ୍ରତି ବିଶ୍ୱାସ ଘାତକତା କରେ' ଲେନିନ୍‌ଙ୍କର ଏହି ଅସାଧାରଣ ବୁଦ୍ଧି ପ୍ରସୂତ ତତ୍ତ୍ୱଟିର ସଠିକତା, ଭାରତୀୟ ବୁର୍ଜୁଆଶ୍ରେଣୀର ରାଜନୈତିକ ହତିଆର ଜାତୀୟ କଂଗ୍ରେସ ବିଶେଷଭାବେ ପ୍ରମାଣିତ କରିଛି। ପ୍ରମାଣିତ କରିଛି ତାର ବାହିନୀର ସେନାଧ୍ୟକ୍ଷ "ମହାତ୍ମା" ଓ ତାର ସହଯୋଗୀଗଣ କିପରି ସାମ୍ରାଜ୍ୟବାଦ, ସାମନ୍ତବାଦ ଓ ବୃହତ ବୁର୍ଜୁଆଶ୍ରେଣୀର ବିଶ୍ୱସ୍ତ ବନ୍ଧୁ। ଗୁନାର ମିରଡ଼ାଲ (Gunnar Myrdal)ତାଙ୍କର ଲେଖା "Asian Drama"ରେ ଯେଉଁ ମନ୍ତବ୍ୟ ବ୍ୟକ୍ତ କରିଛନ୍ତି ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ସେ କହିଛନ୍ତି "ଗାନ୍ଧୀଙ୍କର ଅହିଂସା ନୀତି ପ୍ରତି ବ୍ରିଟିଶ୍ ସରକାର କୃତଜ୍ଞ ହେବାର ଯଥେଷ୍ଟ ସଂଗତ କାରଣ ରହିଛି" (ପୃ-୧୪୩)। କାରଣ, 'ସ୍ୱାଧୀନତା ପ୍ରାପ୍ତି ପରେ ପୂର୍ବର ବହୁଜାତିକ-ଦେଶ ଗୁଡ଼ିକ ସହ କେବଳ ଘନିଷ୍ଠ ସମ୍ପର୍କ ରକ୍ଷାକରାଯାଇନି, ବରଂ ତାକୁ ଅନେକ କ୍ଷେତ୍ରରେ ଆହୁରି ଘନିଷ୍ଠ କରାଯାଇଛି।'(ପୃ-୧୨୫)

## ଭାରତୀୟ ବୁର୍ଜୁଆର ଘୃଣ୍ୟ ବିଶ୍ୱାସ ଘାତକତା

ଉପନିବେଶିକ ପ୍ରଶାସନ ଓ ଭାରତୀୟ ବୁର୍ଜୁଆ ମଧ୍ୟରେ ଏହି କ୍ଷମତା ହସ୍ତାନ୍ତର କିପରି ଘଟିଲା ? ଏଇ 'ଶାନ୍ତିପୂର୍ଣ୍ଣ ହସ୍ତାନ୍ତର' ଘଟିବା ପଛରେ କି, କି ଉପାଦାନ କାମ କରିଛି ? ଗାନ୍ଧୀ ଓ ତାଙ୍କର ସହଯୋଗୀମାନଙ୍କ ପ୍ରତି ବ୍ରିଟିଶ୍ ସରକାର କୃତଜ୍ଞ ରହିବା ପଛରେ କି, କି କାରଣ ରହିଛି ? ଭାରତୀୟ ଜନଗଣଙ୍କ ପାଇଁ ଏଇ କ୍ଷମତା ହସ୍ତାନ୍ତରର ତାତ୍ପର୍ଯ୍ୟ କଣ ? ମୋତେ ଯେଉଁ ମାମଲାରେ ଜଡ଼ିତ କରାଯାଇଛି ସେ ବିଷୟରେ ବୁଝିବାକୁ ହେଲେ, ଯେଉଁ ସବୁ ପ୍ରଶ୍ନ ଆଲୋଚନା କରିବାକୁ ହେବ, ଉପରୋକ୍ତ ପ୍ରଶ୍ନ ଗୁଡ଼ିକ ସେଥିମଧ୍ୟରୁ କିଛି ଅଂଶମାତ୍ର।

ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ସହ ପୁଞ୍ଜିବାଦର ସାଧାରଣ ସଂକଟରାଜିର ଅବସାନ ଘଟିବା ପରିବର୍ତ୍ତେ, ଯୁଦ୍ଧଶେଷରେ ପୁଞ୍ଜିବାଦର ସଂକଟର ବୈଶିଷ୍ଟ୍ୟ ଗୁଡ଼ିକ ଆହୁରି ବେଶି

ତୀବ୍ରତର ହୋଇଛି। ଫାସିବାଦର ଧ୍ୱଂସସାଧନ, ଫାସିବାଦର ପରାଜୟ ପାଇଁ ଷ୍ଟାଲିନ୍‌ଙ୍କ ନେତୃତ୍ୱରେ ସୋଭିଏତ୍ ୟୁନିୟନର ଐତିହାସିକ ଭୂମିକା, ମାଓ ସେ ତୁଂ ଓ ଚୀନ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଚୀନ ବିପ୍ଳବ ଆସନ୍ନ ବିଜୟ ପ୍ରାପ୍ତି ଦିଗରେ ଅଗ୍ରସର ହେବା ଏସବୁର ପ୍ରଭାବରେ କେବଳ ସମଗ୍ର ଦକ୍ଷିଣ ଏସିଆ ନୁହେଁ, ସୁଦୂର ପଶ୍ଚିମ ଏସିଆ ଓ ଆଫ୍ରିକାର ବିଭିନ୍ନ ଦେଶରେ ଔପନିବେଶିକ ଶାସନରୁ ମୁକ୍ତି ପାଇଁ ଆନ୍ଦୋଳନ ଗଢ଼ିଉଠିଲା। ଏକଦିଗରେ ଯୁଦ୍ଧରେ ଜୟଯୁକ୍ତ ସାମ୍ରାଜ୍ୟବାଦୀ ରାଷ୍ଟ୍ର ବିଶେଷ କରି ବ୍ରିଟେନ୍ ଓ ଫ୍ରାନ୍‌ସର କ୍ଷମତା ଓ ମର୍ଯ୍ୟାଦାର ଅବନତି ଏବଂ ଅନ୍ୟଦିଗରେ ସର୍ବହରା ରାଷ୍ଟ୍ରର ଆବିର୍ଭାବ ଓ ଏକ ଆନ୍ତର୍ଜାତିକ ଶକ୍ତି ରୂପେ ସୋଭିଏତ୍ ୟୁନିୟନର ପ୍ରତିଷ୍ଠା, ସମସ୍ତ ଉପନିବେଶିକ ଦେଶଗୁଡ଼ିକର ମୁକ୍ତି ସଂଗ୍ରାମରେ ବୈପ୍ଳବିକ ସମ୍ଭାବନାକୁ ଯଥେଷ୍ଟ ଆଗେଇ ନେବାରେ ସାହାଯ୍ୟ କଲା।

ଏ ପରି ଏକ ଐତିହାସିକ ଆନ୍ତର୍ଜାତୀୟ ପଟ୍ଟଭୂମିରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟରେ ଭାରତ ବର୍ଷରେ ଲକ୍ଷ ଲକ୍ଷ ମଣିଷଙ୍କର ଏକ ଗଣ ଅଭ୍ୟୁତ୍‌ଥାନ ପରିଲକ୍ଷିତ ହେଲା। ଆଇ.ଏନ୍.ଏ ସୈନିକଙ୍କର ବିଚାର ବିରୁଦ୍ଧରେ ସଂଗ୍ରାମୀ ପ୍ରତିବାଦ ବିକ୍ଷୋଭ ଏବଂ ରାଜକୀୟ ଭାରତୀୟ ନୌବିଭାଗ(Royal Indian Navy)ର ସୈନିକ-ବିଦ୍ରୋହ ସମସ୍ତ ଶ୍ରେଣୀ, ଜାତି ଓ ସମ୍ପ୍ରଦାୟର ଏକ ସଂଗ୍ରାମୀ ଐକ୍ୟବଦ୍ଧ ମୋର୍ଚ୍ଚା ଗଢ଼ି ତୋଳିଥିଲା। ସୈନ୍ୟବାହିନୀ ଓ ବିମାନବାହିନୀର ସୈନ୍ୟମାନଙ୍କର ଖୋଲାଖୋଲି ବିଦ୍ରୋହର ଗୁଞ୍ଜରଣ- ଏ ସମସ୍ତ ହିଁ ଥିଲା ଭାରତବର୍ଷର ମୁକ୍ତି ଆନ୍ଦୋଳନର କ୍ରମବର୍ଦ୍ଧମାନ ସଚେତନତାର ସୁସ୍ପଷ୍ଟ ଅଭିବ୍ୟକ୍ତି। ଦେଶବ୍ୟାପୀ ସର୍ବହରା ମଣିଷ ନିଜ ଗୋଡ଼ରେ ନିଜେ ଦଣ୍ଡାୟମାନ ହେଲା। ବ୍ୟାପକ ରାଜନୈତିକ ଧର୍ମଘଟ ଦେଶସାରା ଛାଇ ହୋଇଗଲା। ଦେଶୀୟ ରାଜନ୍ୟବର୍ଗଙ୍କର ଅଧୀନସ୍ଥ ରାଷ୍ଟ୍ର ସମୂହର ଜନଗଣ ବିଶେଷ କରି ସାମନ୍ତବାଦୀ ଶୋଷଣ ବିରୁଦ୍ଧରେ କୃଷକମାନେ ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ଲାଗିଲେ। ଭାରତର ଏହି ଆନ୍ଦୋଳନ କେବଳ ସାଧାରଣ ବେସାମରିକ-ଜନଗଣଙ୍କୁ ନୁହେଁ, ସାମରିକ ବାହିନୀକୁ ମଧ୍ୟ ପ୍ରଥମ ଥର ପାଇଁ ପ୍ରଭାବିତ କରିଥିଲା। ଏଥିରେ ବ୍ରିଟିଶ୍ କର୍ତ୍ତୃପକ୍ଷ ଯେଭଳି ବିଚଳିତ ହୋଇଉଠିଲା ସେଭଳି ଭାରତୀୟ ଜାତୀୟ ବୁର୍ଜୁଆ ନେତୃତ୍ୱ ମଧ୍ୟ ହତବୁଦ୍ଧି ହୋଇପଡ଼ିଲା। ଶହେ ବର୍ଷର ସାମ୍ରାଜ୍ୟବାଦୀ ଓ ସୁପ୍ରାଚୀନ କାଳରୁ ପ୍ରଚଳିତ ସାମନ୍ତବାଦୀ ଭୂମିଦାସ ପ୍ରଥାର ଚିର ଅବସାନ ଘଟାଇବା ପାଇଁ ଭାରତୀୟ ଜନଗଣ ଓ ସାମରିକ ବାହିନୀ ଐକ୍ୟବଦ୍ଧହୋଇ ଯେଉଁ ଆନ୍ଦୋଳନର ବିସ୍ଫୋରଣ ଘଟାଇ ଚାଲିଥିଲେ, ତାକୁ ଧ୍ୱଂସ ଓ ବିପଥଗାମୀ କରିବା ଲକ୍ଷ୍ୟରେ ଏଇ ଦୁଇ ଶକ୍ତି (ବ୍ରିଟିଶ୍ କର୍ତ୍ତୃପକ୍ଷ ଓ ଭାରତୀୟ ବୁର୍ଜୁଆ) ହାତମିଳାଇଲେ। ଏଥିରେ ଭାରତ ବର୍ଷରେ ଏକ ନୂତନ ଯୁଗର ଅୟମାରମ୍ଭର ସଙ୍କେତ ବାରି ହୋଇ ପଡୁଥିଲା। ଏଥିରେ ଥିଲା ବ୍ରିଟିଶ୍ କର୍ତ୍ତୃତ୍ୱର ଭିତ୍ତି ଓ ତାର କ୍ଷମତାର ଯନ୍ତ୍ରକୁ ଉତ୍ପାଟନ କରିବାର ସୂଚନା। ଅଭୂତପୂର୍ବ ଗଣ ଅଭ୍ୟୁଥାନର ପରିଣତି ଅନୁମାନକରି ଭୀତ ସନ୍ତ୍ରସ୍ତ ଭାରତୀୟ ବୁର୍ଜୁଆଶ୍ରେଣୀ ତରବରିଆ

ଭାବେ ବିଶ୍ୱାସ ଘାତକତାର ପଥ ଆପେଣେଇ ନେଲା।

୧୯୪୬ ମସିହା ଫେବୃୟାରୀ ୨୧ ତାରିଖରେ ଯେତେବେଳେ ଭାରତୀୟ ସୈନ୍ୟମାନେ ବିଦ୍ରୋହୀ ନୌସେନା ଉପରକୁ ଗୁଳି ଚଳାଇବା ପାଇଁ ଅସ୍ୱୀକାର କଲେ ସେତେବେଳେ କେବଳ ବିଟ୍ରିଶ୍ ସୈନ୍ୟମାନଙ୍କୁ ଡ଼କରା ହେଲା। ଆଡ଼ମିରାଲ କଡ଼୍ ଫ୍ରେ ବେତାର ମାଧ୍ୟମରେ ତାଙ୍କର ଚରମ ସତର୍କବାଣୀ ଘୋଷଣା କରି କହିଲେ, "ସରକାରଙ୍କ ହାତରେ ମହଜୁଦ୍ ଥିବା ସୈନ୍ୟମାନଙ୍କ ମଧ୍ୟରୁ ବୃହତ୍ତର ଅଂଶକୁ ବ୍ୟବହାର କରାଯିବ.... ଏହାର ଅର୍ଥ ନୌବାହିନୀର ସମ୍ପୂର୍ଣ୍ଣ ଧ୍ୱଂସ ପ୍ରାପ୍ତି।" କଂଗ୍ରେସ ମଧ୍ୟରେ ଲୌହମାନବ ବୋଲି ପରିଚିତ ବଲ୍ଲଭ ଭାଇ ପଟେଲ ସ୍ୱୟଂ ବିଦ୍ରୋହୀ ନୌସେନା ମାନଙ୍କୁ ନିନ୍ଦାକରିବାକୁ ଲାଗିଲେ, ସେନାଧକ୍ଷ୍ୟଙ୍କର ବକ୍ତବ୍ୟକୁ ସମର୍ଥନ କରି କହିଲେ, 'ନୌବାହିନୀରେ ଶୃଙ୍ଖଳା ରକ୍ଷାକରିବା ଉଚିତ୍।'

ମୁକ୍ତି ସଂଗ୍ରାମ ପ୍ରତି ବିଶ୍ୱାସ ଘାତକତାର ସେଇ ଚରମ ପର୍ଯ୍ୟାୟ ସମୟରେ, କଂଗ୍ରେସ ସଭାପତି ମୌଲାନା ଆଜାଦ ଘୋଷଣାକଲେ ଯେ, 'ଧର୍ମଘଟ, ହରତାଳ, କର୍ତ୍ତୃପକ୍ଷଙ୍କର ଆଦେଶ ଅମାନ୍ୟ ପ୍ରଭୃତିର କୌଣସି ସ୍ଥାନନାହିଁ।' ଏବଂ ମହାତ୍ମା ଗାନ୍ଧୀ ସ୍ୱୟଂ ବିଶ୍ୱାସ ଘାତକତାର ସର୍ବଶେଷ ଆଘାତ ଦେଲେ। ସେହି ମହାନ୍ ଅଭ୍ୟୁତ୍ଥାନ ମଧ୍ୟରେ ହିନ୍ଦୁ-ମୁସଲିମ୍ ଐକ୍ୟ ଗଢ଼ିବାକୁ ନିନ୍ଦାକରି କହିଲେ ଯେ "ଜନଗଣଙ୍କର ବ୍ୟାପକ ସଂଗ୍ରାମୀ ସମର୍ଥନ ଏକ ଅଶୁଭ ମିତ୍ରତା, ଯାହା ଭାରତବର୍ଷରେ ଅବଶେଷରେ ଚୂଡ଼ାନ୍ତ ବିଶୃଙ୍ଖଳା ସୃଷ୍ଟି କରିବ। ସେଇ ଅବସ୍ଥାର ଅବସାନ ହେବାକୁ ଅପେକ୍ଷା କରି ମୁଁ ଆହୁରି ୧୨୫ବର୍ଷ ବଂଚି ରହିବାକୁ ଚାହେଁନା। ତା'ଅପେକ୍ଷା ମୁଁ ବରଂ ଅଗ୍ନିରେ ଆତ୍ମାହୁତି ଦେଇଦେବି।" ଏ ବିବୃତି ନିସନ୍ଦେହରେ, ଜନଗଣଙ୍କର ବିଭିନ୍ନ ବର୍ଗର ମଣିଷର କ୍ରମ ବର୍ଦ୍ଧମାନ ବୈପ୍ଳବିକ ଆନ୍ଦୋଳନରେ ଅଂଶଗ୍ରହଣ ଫଳରେ ଉଚ୍ଚଶ୍ରେଣୀ ମଣିଷମାନଙ୍କ ମନରେ ଯେଉଁ ଭୟ ସଞ୍ଚାର ହୋଇଥିଲା ତାହା ଥିଲା ତାର ପରିପ୍ରକାଶ। ଏଇଟା ପରିଷ୍କାର ଯେ ବୁର୍ଜୁଆଶ୍ରେଣୀ ସାମ୍ରାଜ୍ୟବାଦ ବିରୁଦ୍ଧରେ ଚୂଡ଼ାନ୍ତ ବିଜୟ ହାସଲ କରିବାକୁ ଚାହେଁନା; ଏଇଟା ଆହୁରି ମଧ୍ୟ ସ୍ପଷ୍ଟ ଯେ ବୁର୍ଜୁଆଶ୍ରେଣୀ ଜନଗଣତାନ୍ତ୍ରିକ ତଥା ସାମ୍ରାଜ୍ୟବାଦ ବିରୋଧୀ ବିପ୍ଳବକୁ ଶେଷ ପର୍ଯ୍ୟନ୍ତ ନେବା ପାଇଁ ଅକ୍ଷମ। ଏକ ଶହ ବର୍ଷ ବା ତାଠୁ ଅଧିକ ସମୟଧରି ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଯେଉଁ ଅମଲାତାନ୍ତ୍ରିକ ପ୍ରଶାସନ, ପୋଲିସ ଓ ସାମରିକ ବାହିନୀ ଗଢ଼ି ତୋଳିଥିଲେ ତାକୁ, 'ଉଚ୍ଛୃଙ୍ଖଳ ଜନତା' ତଥା ସର୍ବହରା ଓ କୃଷକ ଶ୍ରେଣୀ ବିରୁଦ୍ଧରେ ବ୍ୟବହାର ପାଇଁ ବୁର୍ଜୁଆଶ୍ରେଣୀର ବେଶି ପ୍ରୟୋଜନ ଥିଲା। ସ୍ୱାଭାବିକ ଭାବେ ସେ ଏହି ଦମନ ଯନ୍ତ୍ରକୁ କେବେ ହେଲେ ଭାଙ୍ଗିବାକୁ ଚାହୁଁନଥିଲା।

ଏଇ ଭଳି ସାମ୍ରାଜ୍ୟବାଦ ସହ ଘୃଣ୍ୟ-ବୁଝାମଣାର ଖେଳ ଆରମ୍ଭ ହୋଇଗଲା। ଫଳସ୍ୱରୂପ ଚୂଡ଼ାନ୍ତ ଓ ନିର୍ଲ୍ଲଜ ବିଶ୍ୱାସ ଘାତକତା ଏକ ଧରାବନ୍ଧା ନିୟମ ଭାବେ ଉଭାହେଲା।

ଯେଉଁ ସବୁ କାରଣରୁ ଭାରତୀୟ ବୁର୍ଜୁଆଶ୍ରେଣୀ ମଧ୍ୟରେ, ବୈପ୍ଳବିକ ଶକ୍ତିର ଉତ୍‌ଥାନ ପାଇଁ ଭୟ ସଞ୍ଚାର ହୋଇଥିଲା, ଠିକ୍ ସେଇ ସବୁ କାରଣରୁ ସାମ୍ରାଜ୍ୟବାଦୀ ଶକ୍ତି ମଧ୍ୟରେ ସଂପୂର୍ଣ୍ଣ ବିନାଶ ହେବାର ଆତଙ୍କ ଖେଳିଗଲା। ସାମ୍ରାଜ୍ୟ ବାଦୀ ଶକ୍ତି ବୁଝିସାରିଥିଲା ଯେ, ସେ ଭାରତର ପରିସ୍ଥିତିକୁ ବଳ ପ୍ରୟୋଗ କରି ନିୟନ୍ତ୍ରଣରେ ରଖିପାରିବ ନାହିଁ। ସେହି ସମୟରେ ଭାରତର ଇଷ୍ଟର୍ଣ୍ଣ କମାଣ୍ଡର ଜି.ଓ.ସି ଜେନେରାଲ୍ ସାର୍ ଫ୍ରାନ୍ସ ଟୁକାରଙ୍କ ମତରେ ଏହି ସମୟରେ ଯୁଦ୍ଧ ବିଧ୍ୱସ୍ତ ଓ ଅର୍ଥନୈତିକ ଦୃଷ୍ଟିରୁ ଭାଙ୍ଗି ପଡୁଥିବା ବ୍ରିଟେନ୍ ପକ୍ଷରେ ଭାରତରେ ବ୍ରିଟିଶ୍ କର୍ତ୍ତୃତ୍ୱ ଅତୁଟ ରଖିବା ପାଇଁ, ଆଉ ଅଧିକ ସଂଖ୍ୟକ ବିଟ୍ରିଶ୍ ସୈନ୍ୟ ନିଯୁକ୍ତି କରିବା ପାଇଁ ବ୍ୟୟଭାର ବହନ କରିବା ସମ୍ଭବ ହେବ ନାହିଁ। ସେ କହିଲେ, "ସର୍ବଶେଷରେ ଆମେ ଦେଖିଲୁ ଯେ ଅତିରିକ୍ତ ସେନା ବାହିନୀ ନିଯୁକ୍ତି କରିବାରେ ଯେଉଁ ବ୍ୟୟ ହେବ ତାହା ଆମ ଯୁଦ୍ଧ ବିଧ୍ୱସ୍ତ ଦେଶର ପ୍ରୟୋଜନୀୟ ଶିଳ୍ପ ସାମଗ୍ରୀର ବ୍ୟୟଭାର ଠାରୁ ଅନେକ ବେଶି। ଆମ ଦେଶ ପକ୍ଷେ ତାହା ବହନ କରିବା ସମ୍ଭବ ନୁହେଁ। ଏହା ଥିଲା ଆମର ଭାରତ ଛାଡ଼ିବା ଏପରିକି ଯଥାଶିଘ୍ର ଛାଡ଼ିବା ପଛରେ ଆଉଏକ ବଳିଷ୍ଠ କାରଣ" [While Memory Serves PP 518 ]। ସାର୍ ଷ୍ଟାଫୋର୍ଡ଼ କ୍ରୀପ୍‌ସ୍ ଯେକି ଭାରତରେ ଆପୋସ କ୍ଷମତା ହସ୍ତାନ୍ତରର ଅନ୍ୟତମ ସ୍ଥପତି- ବ୍ରିଟିଶ୍ ପାର୍ଲାମେଣ୍ଟରେ କହିଥିଲେ ଯେ, "ଭାରତ ଉପରେ କର୍ତ୍ତୃତ୍ୱ ବଜାୟ ରଖିବାକୁ ହେଲେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ସର୍ଭିସେସ୍‌କୁ ଆହୁରି ସମ୍ପ୍ରସାରଣ କରିବାକୁ ହେବ ଏବଂ ବ୍ରିଟିଶ୍ ସୈନ୍ୟ ଆହୁରି ବଢ଼ାଇବାକୁ ହେବ।" ସେ ଆଉ ମଧ୍ୟ କହିଥିଲେ ଯେ, ଏଇ ବିକଳ୍ପକୁ 'ବର୍ଜନ କରିବା ବିଷୟରେ ମୋର କୌଣସି ଦ୍ୱିଧା ନାହିଁ।'

ସୁତରାଂ ବିଟ୍ରିଶ୍ ସରକାର ଆପୋଷ ବୁଝାମଣାର ଆବଶ୍ୟକତାକୁ ବୁଝିପାରିଲା। ସେ ଏହି ଇଲାକା ଉପରୁ ରାଜନୈତିକ କବ୍‌ଜା ଛାଡ଼ି ତାର ସମସ୍ତ ଶିଳ୍ପ, ବାଣିଜ୍ୟ ଓ ଆର୍ଥିକ ସ୍ଥିତି ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଅତୁଟ ରଖିବାରେ ସକ୍ଷମ ହେଲା।

ଏହି ପରି ଭାରତୀୟ ବୁର୍ଜୁଆଶ୍ରେଣୀ ଓ ବ୍ରିଟିଶ୍ ଉପନିବେଶିକ ଶାସନ କର୍ତ୍ତୃପକ୍ଷ ଆପୋଷ ବୁଝାମଣା ପାଇଁ ଉତ୍ସାହିତ ହୋଇଉଠିଲେ।। ଫଳରେ, 'ଉଚ୍ଛୃଙ୍ଖଳ ଜନତାର' ରୋଷାଗ୍ନିରୁ ଭାରତକୁ "ରକ୍ଷା" କରାଯାଇ ପାରିଲା।

## ଆପୋଷ ବୁଝାମଣା ଓ କ୍ଷମତା ହସ୍ତାନ୍ତର

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବ୍ୟବହିତ ପରେ ବ୍ରିଟିଶ୍ କର୍ତ୍ତୃପକ୍ଷ ପରିବର୍ତ୍ତିତ ଆନ୍ତର୍ଜାତିକ ସ୍ତରରେ ଶକ୍ତିର ଭାରସାମ୍ୟରେ ଦୁର୍ବଳ ହୋଇପଡ଼ିବା ଓ ଭାରତରେ ସମସ୍ତ ଶ୍ରେଣୀର ଜନଗଣଙ୍କ ମଧ୍ୟରେ ଅଭୁତପୂର୍ବ ବୈପ୍ଳବିକ ଅଭ୍ୟୁତ୍‌ଥାନର ସମ୍ମୁଖୀନ ହୋଇ ଭାରତୀୟ ବୁର୍ଜୁଆଙ୍କ ସହିତ ଆପୋଷ ବୁଝାମଣା କରିବା ପାଇଁ ଆଗ୍ରହୀ ହୋଇ ଉଠିଲେ ଏବଂ ସେହି ଉଦ୍ଦେଶ୍ୟରେ ୧୯୪୫ ମସିହାର ଗ୍ରୀଷ୍ମ କାଳରେ ଭାରତୀୟ ଶିଳ୍ପର ଶୀର୍ଷ ସ୍ଥାନୀୟ ଦୁଇଜଣ

ମିଃ. ଜ.ଡି. ବିରଳା ଓ ମିଃ ଜେ.ଆର.ଡି. ଟାଟାଙ୍କ ନେତୃତ୍ୱରେ ଏକ 'ଶିଳ୍ପମିଶନ' ବ୍ରିଟେନ୍ ଓ ଆମେରିକା ଗସ୍ତରେ ଗଲେ। ଏହି ସମୟରେ ହିଁ କଂଗ୍ରେସ ନେତାମାନଙ୍କୁ ମୁକ୍ତିକରାଗଲା ଓ ଘଟଣା କ୍ରମରେ ଦ୍ରୁତ ଅଗ୍ରଗତି ଘଟିଲା। "ଶିଳ୍ପ ମିଶନ" ଭାରତ-ବିଟ୍ରେନ୍ ସହଯୋଗିତାରେ ଏକ ନୂତନ ଅଧ୍ୟାୟର ସୂଚନା ଦେଲା। କାରଣ ଏହି 'ମିଶନ' ଅନୁଭବ କଲା ଯେ ଭାରତରେ ଶିଳ୍ପ ବିକାଶ କ୍ଷେତ୍ରରେ ବ୍ରିଟିଶ୍ ଶିଳ୍ପପତିମାନଙ୍କର ମନୋଭାବରେ ଯଥେଷ୍ଟ ପରିବର୍ତ୍ତନ ଘଟିଛି। ଅଧିକାଂଶ ବ୍ରିଟିଶ୍ ଶିଳ୍ପପତିମାନେ ଭାରତର ଶିଳ୍ପ ବିକାଶର ପ୍ରୟୋଜନିୟତା ସମ୍ପର୍କରେ କେବଳ ସହମତ ପୋଷଣ କରୁନଥିଲେ, ବରଂ ଅନେକକ୍ଷେତ୍ରରେ ଭାରତର ରାଜନୈତିକ ଉଚ୍ଚାକାଙ୍‌କ୍ଷା ସହ ସେମାନେ ଐକ୍ୟମତ ପୋଷଣ କରୁଥିଲେ। (Eastern economic June 29, 1995)

ଆପୋଷ ବୁଝାମଣାର ସବୁଜ ସଙ୍କେତ ଘଟଣାର ଗତିକୁ ତ୍ୱରାନ୍ୱିତ କଲା। ବ୍ରିଟିଶ୍ କ୍ୟାବିନେଟ୍ କ୍ଷମତା ହସ୍ତାନ୍ତର ସିଦ୍ଧାନ୍ତ ନେଲା। କ୍ୟାବିନେଟ୍ ମିଶନ ଦିଲ୍ଲୀରେ ଉପସ୍ଥିତ ହେଲା। ତତ୍‌କ୍ଷଣାତ୍ ପଣ୍ଡିତ ନେହେରୁ କେନ୍ଦ୍ରରେ ଏକ ମଧ୍ୟବର୍ତ୍ତୀ କାଳୀନ ସରକାରର ନେତୃତ୍ୱ ନେଲେ। ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ କ୍ଷମତା ହସ୍ତାନ୍ତର ପାଇଁ ଘୋଷଣା କରାଗଲା। ୧୯୩୫ ମସିହାରେ ଭାରତୀୟ ସମ୍ବିଧାନ ଅନୁଯାୟୀ ସ୍ୱାଧୀନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ ଭାବେ ଲର୍ଡ଼ ମାଉଣ୍ଟ ବ୍ୟାଟେନ୍ ଏବଂ ପ୍ରଥମ ପ୍ରଧାନ ମନ୍ତ୍ରୀଭାବେ ଜବାହାରଲାଲ ନେହେରୁ ଭାରତର ସ୍ୱାଧୀନତା ଘୋଷଣା କଲେ।

ଏହି ଭଳି ଭାବରେ ସ୍ୱାଧୀନତା ଘୋଷଣା କରାଗଲା। 'ୟୁନିୟନ ଜ୍ୟାକ୍' ଅବନମିତ ହେଲା। ତା ସ୍ଥାନରେ ତ୍ରିରଙ୍ଗା ଧ୍ୱଜା ଉତ୍ତୋଳନ କରାଗଲା। "ଶେଷରେ ବୋହୂକୁ ଘରକୁ ଅଣାଗଲା, ହେଲେ ବୋହୂ ସେତେବେଳକୁ ଏକ ବେଶ୍ୟାରେ ପରିଣତ ହୋଇସାରିଥିଲା।" ଜାତୀୟ ନେତାମାନେ "ସାମ୍ବିଧାନିକ ଚତୁରତା ସହ ନିୟତିକୁ ପ୍ରତାରିତ କରିବାକୁ ଚାହିଁଲେ।" (କାର୍ଲମାର୍କ୍ସ- ଅଷ୍ଟାଦଶ ବ୍ରୁମେୟା ଲୁଇଶ୍ ବୋନାପାର୍ଟ)

ଏଭଳି ଶାନ୍ତିପୂର୍ଣ୍ଣ ସାମ୍ବିଧାନିକ ପଦ୍ଧତିରେ, ବିନା ମୁକ୍ତିଯୁଦ୍ଧରେ ତଥା ଜାତୀୟ ମୁକ୍ତି ବାହିନୀ ଗଢ଼ିତୋଳିବାର ଆବଶ୍ୟକତା ବ୍ୟତିରେକେ ସ୍ୱାଧୀନତା ମିଳିଲା। ଫଳରେ ବ୍ରିଟିଶ୍ ସରକାର ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସୁଶୃଙ୍ଖଳ ଭାବେ ଏବଂ ଆନ୍ତରିକତାର ସହ ସମସ୍ତ ଭାରତୀୟ ପ୍ରତିଷ୍ଠାନ, ସଂଗଠନ ଓ ସେବା ବିଭାଗ ଗୁଡ଼ିକୁ ନୂତନ ଭାରତ ସରକାରଙ୍କ ହାତରେ ଅର୍ପଣ କରି ନିଜେ ଶାସନରୁ ଅପସରି ଗଲା।

(୧) ଉପନିବେଶିକ ଯୁଗରେ ସାମ୍ରାଜ୍ୟବାଦୀ ନୀତିର ଐତିହାସିକ ଅନ୍ତର୍ବିରୋଧ ଓ ପ୍ରତିଦ୍ୱନ୍ଦ୍ୱିତାର ଫଳଶ୍ରୁତି ହିସାବରେ ଭାରତ ଆଞ୍ଚଳିକ ଅଖଣ୍ଡତାର ଉତ୍ତରାଧିକାରୀ ହୋଇ ଉଭାହେଲା। ୧୯୨୧ ମସିହାରେ ସର୍ବଭାରତୀୟ କଂଗ୍ରେସ କମିଟି ଏକ ପ୍ରସ୍ତାବ ଗ୍ରହଣ କରି ପଡ଼ୋଶୀ ଦେଶଗୁଡ଼ିକୁ ଏହି ପ୍ରତିଶ୍ରୁତି ଦେଲା ଯେ ଭାରତୀୟ ଜନଗଣ ଉପନିବେଶିକ

ଶାସକଙ୍କର ଦୂରଭିସନ୍ଧି ମୂଳକ ଚୁକ୍ତିଗୁଡ଼ିକୁ ମାନିନେବନି; ପୁଣି ଘୋଷଣା କଲା ଯେ ସାମ୍ରାଜ୍ୟବାଦୀ ସରକାର ପଡ଼ୋଶୀ ଦେଶଗୁଡ଼ିକ ସହ ଯେଉଁସବୁ ଚୁକ୍ତି ସମ୍ପାଦନ କରିଛି ସେଗୁଡ଼ିକ ଔପନିବେଶିକ ଶୋଷଣ ବ୍ୟବସ୍ଥାକୁ ବଜାୟ ରଖିବାର ଲକ୍ଷ୍ୟରେ କରାଯାଇଛି। ତେଣୁ ସେଇସବୁ ପଡ଼ୋଶୀ ରାଷ୍ଟ୍ର ଗୁଡ଼ିକ ଯେପରି ଭାରତୀୟ ଜନଗଣଙ୍କ ଉପରେ କୌଣସି ବିଦ୍ୱେଷ ପୋଷଣ ନ କରନ୍ତୁ। ଔପନିବେଶିକ ଶକ୍ତି ସହ କୌଣସି ଚୁକ୍ତି ସମ୍ପାଦନ କ୍ଷେତ୍ରରେ ଚୁକ୍ତିରୁ ନିବୃତ ରହିବା ପାଇଁ କହିବାର ଅର୍ଥ ନୁହେଁ ଯେ ଭାରତର ସ୍ୱାର୍ଥହାନି କରି ତାହା କରିବାକୁ ହେବ। ("Asian Drama", Gunner Myrdal, Page-181)

କିନ୍ତୁ କ୍ଷମତା ହସ୍ତାନ୍ତର ମଧ୍ୟମରେ ଯେଉଁ ନୂତନ ଶାସକ ଦଳ କ୍ଷମତାସୀନ ହେଲା, ସେ ଉପରୋକ୍ତ ଘୋଷଣାକୁ ଚପି ଦେଲା। ନୂଆ 'ସ୍ୱାଧୀନ' ଭାରତ ଉତ୍ତରାଧିକାରୀ ସୂତ୍ରରେ ପାଇଥିବା ଆଞ୍ଚଳିକ ଭୂଖଣ୍ଡ ଉପରେ ଏବଂ ହିମାଳୟ ଓ ସୀମାନ୍ତ ଅଞ୍ଚଳରେ ଅବସ୍ଥିତ ଛୋଟ ଛୋଟ ରାଷ୍ଟ୍ର ଗୁଡ଼ିକ ସହ ବ୍ରିଟିଶ୍ ସରକାର ଯେଉଁ 'ନିରପେକ୍ଷ ରାଷ୍ଟ୍ରନୀତି'(Buffer state politics) ଅବଲମ୍ବନ କରିଥିଲା, ସେ ବିଷୟରେ ସ୍ଥିତାବସ୍ଥା ବଜାୟ ରଖିବାର ନୀତି ଅବଲମ୍ବନ କଲା। ଫଳତଃ ଭୂଟାନ ଓ ସିକିମ୍ ରାଜ୍ୟ ଉପରେ ନିୟନ୍ତ୍ରଣ ବଜାୟ ରଖିବାର ବ୍ରିଟିଶ୍ ନୀତି ସଂପର୍କରେ ଭାରତ ସରକାର କେବେହେଲେ ଚିନ୍ତାଭାବନା ବା ପର୍ଯ୍ୟାଲୋଚନା କରିନି। କାର୍ଯ୍ୟତଃ ସୀମାନ୍ତବର୍ତ୍ତୀ ରାଜ୍ୟ ଗୁଡ଼ିକ ସହ ଭାରତର ସମ୍ପର୍କ ଉତ୍ତେଜନା ପୂର୍ଣ୍ଣହୋଇ ରହିଲା। ଭାରତର ଉତ୍ତର-ପଶ୍ଚିମ ଓ ଉତ୍ତର-ପୂର୍ବ ସୀମାନ୍ତକୁ ନେଇ ଭାରତ ସରକାରର ବଳିଷ୍ଠ ମନୋଭାବ, ସାମ୍ରାଜ୍ୟବାଦୀ ଶକ୍ତିର ଅନ୍ୟାୟ ଭାବେ ନିର୍ଦ୍ଧାରିତ, ଆନ୍ତର୍ଜାତିକ ସୀମାରେଖା ବଜାୟ ରଖିବାର ମାନସିକତା, "ମାନଚିତ୍ର ଥାଉ ବା ନଥାଉ" ଦୃଷ୍ଟିଭଙ୍ଗୀ (ନଭେମ୍ବର ୨୦, ୧୯୫୦ ମସିହା ଲୋକସଭାରେ ନେହେରୁଙ୍କ ଭାଷଣ) କିମ୍ବା ଅଗ୍ରସର ନୀତି (Forward Policy) ଇତ୍ୟାଦି ଅତିପରିଚିତ ଏଇ ସବୁ ନୀତିଗୁଡ଼ିକ ବିଷୟରେ ପୁନର୍ଲିଖନ ଅନାବଶ୍ୟକ। ଅନୁଭୂତିରୁ ଜଣାଯାଏ ଭାରତସରକାର କ୍ଷମତା ହସ୍ତାନ୍ତର ସହ ଭାରତୀୟ ଜନଗଣଙ୍କ ସ୍ୱାର୍ଥ ବିରୋଧୀ ସାମ୍ରାଜ୍ୟବାଦୀ ନୀତିକୁ ନିଜର ନୀତି ଭାବେ, ଉତ୍ତରାଧିକାରୀ ସୂତ୍ରେ ପାଇଅଛି।

(୨) ଭାରତ ସରକାର ବ୍ରିଟିଶ୍ ସାମରିକ ବ୍ୟବସ୍ଥାର ମଧ୍ୟ ଉତ୍ତରାଧିକାରୀ ହେଲା। "ଭାରତୀୟ ସୈନିକ ଔପନିବେଶିକ ବାହିନୀର ଏକ ଅବିଚ୍ଛେଦ୍ୟ ଅଙ୍ଗଥିଲା।" "ବ୍ରିଟିଶ୍-ଭାରତୀୟ ସୈନ୍ୟବାହିନୀକୁ ରାଜନୀତିଠାରୁ ଦୂରେଇ ରଖାଯାଉଥିଲା। ଏବଂ ତାକୁ ପ୍ରଧାନତଃ ସାମ୍ରାଜ୍ୟବାଦୀ ଲକ୍ଷ୍ୟ ପୂରଣ ଉଦ୍ଦେଶ୍ୟରେ ସୃଷ୍ଟି କରାଯାଇଥିଲା। ଅଫିସରମାନଙ୍କୁ ସେମାନଙ୍କର ଆନୁଗତ୍ୟକୁ ନେଇ ଯାଞ୍ଚ କରାଯାଉଥିଲା। ଅବଶ୍ୟ କେତେକେ ବ୍ରିଟିଶ୍ ଶାସନର ହିତାଧିକାରୀ ଥିଲେ ଏବଂ ତାକୁ ବଜାୟ ରଖିବାରେ ତାଙ୍କର ନ୍ୟସ୍ତସ୍ୱାର୍ଥ ଜଡ଼ିତ ଥିଲା। ଅଧିକାଂଶ ଅଫିସର ପାଶ୍ଚାତ୍ୟ ଧ୍ୟାନଧାରଣା, ସଂସ୍କୃତି, ପୋଷାକପତ୍ର ଏବଂ ସାମାଜିକ ଆଦବ-

କାୟଦା ଅନୁକରଣ କରିବାକୁ ପସନ୍ଦ କରୁଥିଲେ।" (ବ୍ରିଗେଡ଼ିୟର J.P. Dalvi, Himalayan Blunder, page- 345) ଏବଂ ଦେଶର ଆଇନି ଶୃଙ୍ଖଳା ବଜାୟ ରଖିବା ପାଇଁ ଉଦ୍‌ବିଗ୍ନ ହୋଇଉଠୁଥିଲେ ଯାହା ଉପନିବେଶିକ ଶାସନ ପାଇଁ ଗୁରୁତ୍ୱ ପୂର୍ଣ୍ଣ ଥିଲା।

ଏଇପରି ଭାବରେ ଭାରତୀୟ ସୈନ୍ୟବାହିନୀ, ସାମ୍ରାଜ୍ୟବାଦୀ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଭଡ଼ାଟିଆ ସୈନ୍ୟ ଭାବେ ଗଢ଼ିଉଠିଲା, ସାଧାରଣ ଜନଜୀବନର ମୂଳ ସ୍ରୋତଠାରୁ ବିଛିନ୍ନ କରି, ଜାତୀୟ ଲକ୍ଷ୍ୟରୁ ବିଚ୍ୟୁତ କରି, ରାଜନୈତିକ ଆବ ହାୱାଠାରୁ ଦୂରେଇ ରଖାଗଲା। ଏଭଳି ଏକ ସୈନ୍ୟବାହିନୀକୁ ଭାରତ ସରକାର ବ୍ରିଟିଶ୍ ସରକାରଠାରୁ ଉତ୍ତରାଧିକାର ସୂତ୍ରରେ ହାସଲ କଲା। ଏହିଭଳି ଏକ ଜାତୀୟତା ବିରୋଧୀ ଭୂମିକାନେଇ ଆସିଥିବା ଭାରତୀୟ ସୈନ୍ୟବାହିନୀକୁ ୧୯୪୭ ଅଗଷ୍ଟ ୧୫ ପରେ ଦୀର୍ଘ ଦୁଇବର୍ଷ ବ୍ରିଟିଶ୍ ସୈନ୍ୟବାହିନୀର ପ୍ରଧାନ କମାଣ୍ଡର ଇନ୍ ଚିଫ୍ ଜେନେରାଲ୍ ବାଉଚରଙ୍କ ଅଧିନରେ ରଖାଗଲା। ଆମର ପ୍ରତିରକ୍ଷା ବ୍ୟବସ୍ଥା ସାମ୍ରାଜ୍ୟବାଦୀଙ୍କ ଅଧୀନସ୍ଥ ହୋଇରହିଲା। ଯେପରି ୧୯୫୦ ମସିହା ଅକ୍ଟୋବର ମାସରେ ଓୟେଲିଙ୍ଗ୍‌ଟନ୍ ଡ଼ିଫେନ୍ସ ସର୍ଭିସ୍ ଷ୍ଟାଫ୍ କଲେଜରେ "କମାଣ୍ଡେଣ୍ଟ ଜେନେରାଲ୍ ଡବ୍ଲ୍ୟୁ, ଡି.ଏ. ଲେନ୍‌ଟେଇନ୍, ମୁଖ୍ୟ ଲେକ୍‌ଚର ହଲକୁ ପଶିଆସି ଲେକ୍‌ଚରଙ୍କୁ କାର୍ଯ୍ୟରୁ ନିବୃତ କରି ଚୀନ୍ ସମ୍ମୁଖରେ ଆମ ନେତାମାନଙ୍କର ଅଦୂର ଦର୍ଶିତା ଓ ନିଷ୍କ୍ରିୟତାର ଅଭିଯୋଗ କରି ସେମାନଙ୍କୁ ନିନ୍ଦାକରିବାକୁ ଲାଗିଲେ। ଘଟଣାଟି ଚୀନ୍‌ର ତିବ୍ବତରେ ଅନୁପ୍ରବେଶର ଠିକ୍ ପରେ ପରେ ଘଟିଥିଲା।" (ବ୍ରିଗେଡ଼ିୟର J.P Dalvi Himalayan Blunder page- 28) ଏ ଭଳି କ୍ଷମତା ହସ୍ତାନ୍ତର ଥିଲା ଭାରତୀୟ ବୁର୍ଜୁଆ ଓ ସାମ୍ରାଜ୍ୟବାଦୀ ମାନଙ୍କ ମଧ୍ୟରେ ଅପମାନଜନକ ଆପୋଷ ମିଳାମିଶା, ଯାହାର ଉଦ୍ଦେଶ୍ୟ ଥିଲା ସେମାନଙ୍କର ଯୌଥ ଶୋଷଣକୁ ସୁରକ୍ଷା ଦେବା।

ବ୍ରିଟିଶ୍ ତାର ସାମ୍ରାଜ୍ୟବାଦୀ ସ୍ୱାର୍ଥପାଇଁ ସୃଷ୍ଟି ଓ ସମୃଦ୍ଧ କରିଥିବା ଭଡ଼ାଟିଆ ସୈନ୍ୟବାହିନୀକୁ ଯେ ଭଳି 'ସ୍ୱାଧୀନ ଭାରତ' ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ହେଲା, ଠିକ୍ ସେହିଭଳି, "ଭାରତ ବର୍ଷକୁ ଶାସନ କରିବା ଉଦ୍ଦେଶ୍ୟରେ ବ୍ରିଟିଶ୍ ଦ୍ୱାରା ସୃଷ୍ଟ ଯଥେଷ୍ଟ ଅଭିଜ୍ଞ କ୍ଷମତାଯନ୍ତର ମଧ୍ୟ ଭାରତୀୟ ଶାସକ ବର୍ଗ ଉତ୍ତରାଧିକାରୀ ହେଲା।" ନୂତନ ରାଷ୍ଟ୍ରର ଗ୍ରାମ ସ୍ତରର ସରକାରୀ ପଦାଧିକାରୀଠାରୁ ଆରମ୍ଭ କରି ସରକାରର ଶୀର୍ଷତମ ସେକ୍ରେଟାରୀ ସ୍ତର ପର୍ଯ୍ୟନ୍ତ ପ୍ରଶାସନିକ ବ୍ୟବସ୍ଥାକୁ ଅପରିବର୍ତ୍ତିତ ଭାବେ ଗ୍ରହଣ କରିନିଆଗଲା। 'ସ୍ୱାଧୀନ ଭାରତ ଗ୍ରାମାଞ୍ଚଳର ସାମନ୍ତବାଦି ଶକ୍ତିକୁ ମଧ୍ୟ ଆପଣେଇ ନେଲା।' "ସ୍ୱାଭାବିକ ଭାବରେ ଭାରତରେ ବେସାମରିକ ପ୍ରଶାସକମାନେ ବ୍ରିଟିଶ୍ ବ୍ୟବସ୍ଥାପରି ବ୍ୟକ୍ତିଗତ ଭାବେ ଓ ସରକାରର ଅଂଶ ହିସାବରେ ରାଜନୈତିକ ପ୍ରଭାବ ବିସ୍ତାର କରି ପାରିଲେ। କିନ୍ତୁ ଅଧିକାଂଶ କ୍ଷେତ୍ରରେ ବ୍ରିଟେନ୍ ଭଳି କୌଣସି ମୌଳିକ ସଂସ୍କାର ସାଧନ କରିବା ପରିବର୍ତ୍ତେ ପୁରୁଣା ପ୍ରଥା ତଥା

ସ୍ଥିତାବସ୍ଥା ବଜାୟ ରଖିବା ପାଇଁ ପ୍ରଭାବ ବିସ୍ତାର କରିଚାଲିଛି । ଅର୍ଥାତ୍ ରକ୍ଷଣଶୀଳ ବାହିନୀ ହିସାବରେ କାର୍ଯ୍ୟ କରୁଛି ।" (Asian Drama page - 263)

ପ୍ରଧାନ ମନ୍ତ୍ରୀ ହେବାର ଅନେକ ଦିନ ପୂର୍ବରୁ ଜବାହାର ଲାଲ ନେହେରୁ ଜନସାଧାରଣଙ୍କ ଉଦ୍ଦେଶ୍ୟରେ କହିଥିଲେ ଯେ, "ଯେତେଦିନ ପର୍ଯ୍ୟନ୍ତ ଆଇ.ସି.ଏସ୍ (Indian Civil Services) ମାନସିକତା ଆମର ଶାସନ ବ୍ୟବସ୍ଥା ଓ ସରକାରୀ ସେବାରେ ସଞ୍ଚାରିତ ହେଉଥିବ, ସେତେଦିନ ପର୍ଯ୍ୟନ୍ତ ଭାରତର ନିଜସ୍ୱ କୌଣସି ବ୍ୟବସ୍ଥା ଗଢ଼ିଉଠିବ ନାହିଁ । ସୁତରାଂ ମୋର ମନେହୁଏ ଯେ, ଆମର ନୂତନ ବ୍ୟବସ୍ଥାକୁ କାର୍ଯ୍ୟକ୍ଷମ କରିବା ପୂର୍ବରୁ ଆଇ.ସି.ଏସ୍ ଓ ସେଭଳି ସେବା ବ୍ୟବସ୍ଥା ଉଚ୍ଛେଦ ହେବା ଆବଶ୍ୟକ । ଏହା ଭାବି ହେଉନି ଯେ ବର୍ତ୍ତମାନ ସେମାନେ ଯେଉଁ ହାରରେ ବେତନ ଓ ଭତ୍ତା ପାଉଛନ୍ତି ତାହାହିଁ ତାଙ୍କୁ ଦେବାକୁ ପଡ଼ିବ" (ନେହେରୁ ଆତ୍ମଜୀବନୀ ପୃ-୪୪୫) । ମହାନ୍ ମହାତ୍ମା ୧୯୩୦ ମସିହାରେ ଭାଇସ୍‌ରାୟ ଲର୍ଡ ଇରୱିନ୍‌ଙ୍କୁ ଲିଖିତ ଏକ ଚିଠିରେ ମନ୍ତବ୍ୟ ଦେଇଥିଲେ ଯେ- "ଯେଉଁ ବ୍ୟବସ୍ଥାରେ ଭାଇସ୍‌ରାଏଙ୍କୁ ତଥା ସମଗ୍ର ଉଚ୍ଚ ପ୍ରଶାସନିକ ଅଧିକାରୀଙ୍କୁ ଉଚ୍ଚ ହାରରେ ବେତନ ଦେବାର ବ୍ୟବସ୍ଥା ରହିଛି ତାହା ସଂପୂର୍ଣ୍ଣ ବାତିଲ ହେବା ଦରକାର" (History of congress, ପଟ୍ଟାଭି ସିତାରାମାୟା, ପୃ-୬୩୪) । ଯେପରି ନେହେରୁ ଚାହିଁଥିଲେ କିମ୍ବା ଅହିଂସ ମହାତ୍ମା ନମ୍ରଭାବରେ ଆବେଦନ କରିଥିଲେ ଏଇ ବ୍ୟବସ୍ଥା କଣ ସେପରି ସମ୍ପୂର୍ଣ୍ଣ ଭାବରେ ବିଲୋପ ହୋଇଯାଇଛି ? ନା, ଜାତୀୟ ବିପ୍ଳବର ବିଶ୍ୱାସ ଘାତକ ଭାରତୀୟ ବୁର୍ଜୁଆ ନେତୃତ୍ୱ ବ୍ରିଟିଶ୍ ଦ୍ୱାରା ପ୍ରଦତ୍ତ ପ୍ରଶାସନିକ ବ୍ୟବସ୍ଥାକୁ ସାମାନ୍ୟ ମାତ୍ର ପରିବର୍ତ୍ତନ ନକରି ବଜାୟ ରଖିବା ସହ ଉଚ୍ଚତମ ଓ ନିମ୍ନତମ ପଦବୀରେ ଥିବା ବେତନ ବ୍ୟବଧାନକୁ ମଧ୍ୟ ବଜାୟ ରଖିଲେ । କେବଳ ସେତିକି ନୁହେଁ ତା ସହିତ ପ୍ରଶାସିନକ ପଦ୍ଧତି ଓ ରୀତିନୀତି- ପାର୍ଲ୍ଲାମେଣ୍ଟ ଠାରୁ ଆରମ୍ଭ କରି ପ୍ରଶାସନର ନିମ୍ନତମ ପଦାଧିକାରୀଙ୍କର ଗୋପନ ଫାଇଲ୍ ଚାଲୁରଖିବା ପାଇଁ ବ୍ରିଟିଶ୍ ସରକାରରେ ଯାହା ଯାହା ପ୍ରଶାସନିକ ବ୍ୟବସ୍ଥା ଥିଲା ତାହା ଠିକ୍ ସେଭଳି ବଜାୟ ରଖାହେଲା ଏବଂ ଆଜି ପର୍ଯ୍ୟନ୍ତ ସେହି ବ୍ୟବସ୍ଥା ଅପରିବର୍ତ୍ତିତ ହୋଇ ରହିଛି ।

ମାର୍କ୍ସ ତାଙ୍କର 'ଜର୍ମ୍ମାନୀ ରିଭୋଲ୍ୟୁସନ୍ ଓ କାଉଣ୍ଟର ରିଭୋଲ୍ୟୁସନ୍' ଶୀର୍ଷକ ଲେଖାରେ କି ଚମତ୍କାର ଭାବେ ବିପ୍ଳବ ପ୍ରତି ବିଶ୍ୱାସ ଘାତକଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି 'ଇୟୁନାଇଟେଡ୍ ଡାଏଟ୍‌ର ବିରୋଧୀ ନେତାମାନେ ମନ୍ତ୍ରୀ ସଭାଗଠନ କରିବା ପାଇଁ କହିଲେ, ଏବଂ ରାଜତନ୍ତ୍ରକୁ ରକ୍ଷା କରିବା ପାଇଁ ତା'ର ପୁରୁଣା ସରକାରର ସମସ୍ତ ଗୋଷ୍ଠୀ ଯଥା- ଅଭିଜାତ ଓ ସାମନ୍ତବର୍ଗ, ଅମଲାତନ୍ତ୍ର ଓ ସେନାବାହିନୀର ସମର୍ଥନ ପାଇ ଚାଲିଲେ । 'ଶୃଙ୍ଖଳା' ବଜାୟ ରଖିବା ପାଇଁ ସେମାନେ ରାଷ୍ଟ୍ରତନ୍ତ୍ରର ସମସ୍ତ ଅମଲା ଓ ସାମରିକ ପଦାଧିକାରୀଙ୍କୁ ବ୍ୟବହାର କଲେ । ସେମାନଙ୍କ ଭିତରୁ କାହାରିକୁ ହେଲେ ବରଖାସ୍ତ

କଲେନି। ପୁରୁଣା ଅମଲାତାନ୍ତ୍ରୀକ ପ୍ରଶାସନିକ ବ୍ୟବସ୍ଥାର ବିନ୍ଦୁମାତ୍ର ପରିବର୍ତ୍ତନ ଘଟାଇଲେ ନାହିଁ.... ମନ୍ତ୍ରୀ ସଭାର ବ୍ୟକ୍ତିବିଶେଷଙ୍କ ଛଡ଼ା ପୃଣିଆର୍ ଆଉ କୌଣସି କିଛି ପରିବର୍ତ୍ତନ ହେଲାନାହିଁ। ବିଭିନ୍ନ ସରକାରୀ ବିଭାଗରେ ନିମ୍ନତମ ପଦାଧିକାରୀ କାହାକୁ ସ୍ପର୍ଶ ପର୍ଯ୍ୟନ୍ତ କରାଗଲା ନାହିଁ। କ୍ଷମତା ହସ୍ତାନ୍ତର ପରବର୍ତ୍ତୀ ଭାରତ କ୍ଷେତ୍ରରେ ସେହି ଏକା ଘଟଣାର ପୁନରାବୃତି ହୋଇଥିବାର ଆମେ ଦେଖିପାରୁଛୁ।

ବସ୍ତୁତଃ ସେଇ ଏକା ବ୍ରିଟିଶ୍ ଗଭର୍ଣ୍ଣର ଜେନେରାଲ୍ ରହିଲେ, ବ୍ରିଟିଶ୍ କମାଣ୍ଡର ଇନ୍ ଚିଫ୍ ସୈନ୍ୟବାହିନୀର ପ୍ରଧାନ ହୋଇ ରହିଲେ, ସେଇ ଏକା ସେକ୍ରେଟାରିଏଟ୍ ଓ ବିଭାଗୀୟ ମୁଖ୍ୟମାନେ ବ୍ରିଟିଶ୍ ସମକାଳୀନ ଅବସ୍ଥା ଭଳି ସମସ୍ତ ସ୍ୱମହିମା ଓ କ୍ଷମତା ସହ କାର୍ଯ୍ୟ କରିଚାଲିଲେ।

ବିଶ୍ୱସ୍ତ ମିତ୍ର - ଶ୍ରମିକ, କୃଷକ ଓ ମଧ୍ୟବିତ୍ତ ଶ୍ରେଣୀ ବିରୁଦ୍ଧରେ ବୁର୍ଜୁଆ ଶ୍ରେଣୀର ଏ ଧରଣର ବିଶ୍ୱାସଘାତକତା ଇତିହାସରେ ଅନ୍ୟକେଉଁଠାରେ ଘଟିନି।

## ସାମନ୍ତବାଦ ସହ ବ୍ୟବସ୍ଥାଗତ ଚୁକ୍ତି: ଦେଶୀୟ ରାଜନ୍ୟ ବର୍ଗ

ଭାରତର ସାମନ୍ତ ରାଜାମାନଙ୍କର ରାଜ୍ୟମାନଙ୍କରେ (Princely state) ସାମନ୍ତବାଦୀ ବ୍ୟବସ୍ଥା ବିରୁଦ୍ଧରେ ଅଭୂତପୂର୍ବ ଗଣ ଅଭ୍ୟୁତ୍‌ଥାନ ଦେଖା ଦେଲା। ଭାରତୀୟ ବୁର୍ଜୁଆମାନେ ଜନତାର କ୍ରୋଧରୁ ସାମନ୍ତ-ରାଜାମାନଙ୍କୁ ରକ୍ଷା କରିବାକୁ ସେମାନଙ୍କ ସହ ବୁଝାମଣା କରିବା ପାଇଁ ତରବରିଆ ଭାବେ ଆଗେଇ ଆସିଲେ। ୧ ୯ ୫ ୦ ମସିହା ବେଳକୁ ପ୍ରାୟ ସମସ୍ତ ରାଜନ୍ୟବର୍ଗ ସେ ସମୟର ପୁରୁଣା ସାମାଜିକ ଓ ଅର୍ଥନୈତିକ ସୁବିଧା ସୁଯୋଗକୁ ବଜାୟ ରଖି ବ୍ୟବସ୍ଥାରେ ବିଶେଷ କିଛି ହେରଫେର୍ ନକରି ଭାରତୀୟ ରାଷ୍ଟ୍ର ସହ ନିଜକୁ ଖାପଖୁଆଇ ନେଲେ। ଏଇ ଘଟଣା ଗୁନାର ମିର୍‌ଡ଼ାଲ ତାଙ୍କର ଏସିଆନ୍ ଡ୍ରାମା ପୁସ୍ତକରେ ପରିଷ୍କାର ଭାବେ ଚିତ୍ରିତ କରି କହିଛନ୍ତି ଯେ, 'କୁଟନୀତି, ଖୋସାମଦ, ଆଇନଗତ ଭାବେ ଲାଞ୍ଚ ପ୍ରଦାନ' ଏ ସବୁ ନାନା ଉପାୟ ଅବଲମ୍ବନ କରି ଭାରତୀୟ ରାଜନ୍ୟ ବର୍ଗଙ୍କୁ ଭାରତୀୟ ରାଷ୍ଟ୍ର ସହ ଯୁକ୍ତ କରାଗଲା। ଗଣତାନ୍ତ୍ରିକ ବିପ୍ଳବୀ ଆଦର୍ଶ ବିରୋଧି ସମସ୍ତ ପଦ୍ଧତି, ଯଥା ଉଦାର ଆର୍ଥିକ ସୁବିଧା ଦାନ, ରାଜନ୍ୟବର୍ଗଙ୍କର ଖାସ ହାତପାଣ୍ଠି ବଜାୟ ରଖିବା, ଅସଂଖ୍ୟ ଟିକସରୁ ତାଙ୍କୁ ଛାଡ଼ କରିବା, ସେମାନଙ୍କର ସମ୍ପତ୍ତି ମାଲିକିନା ବଜାୟ ରଖିବା ଇତ୍ୟାଦି ନାନା ପ୍ରକାର ସୁବିଧା ଦିଆଗଲା। ଏହା ସହ ତତ୍‌କାଳୀନ ଭାରତ ସରକାର ଏଇସବୁ ରାଜାମାନଙ୍କ ମଧ୍ୟରୁ ଅନେକଙ୍କୁ ଲୋଭନୀୟ କୁଟନୈତିକ ପଦରେ ଅଧିଷ୍ଠିତ କଲେ। ରାଜ୍ୟମାନଙ୍କରେ ରାଜ୍ୟପାଳ ପଦବୀ ଦେଲେ ଓ ଜାତିସଂଘରେ ପ୍ରତିନିଧି ହିସାବରେ ନିଯୁକ୍ତି ଇତ୍ୟାଦି କଲେ। ସାମ୍ରାଜ୍ୟବାଦ ସହ ଆପୋଷ ବୁଝାମଣା ଓ କ୍ଷମତା ହସ୍ତାନ୍ତର ସମେତ ସାମନ୍ତବାଦର ସ୍ୱାର୍ଥ ରକ୍ଷା ଓ ତା ସହ ସହାବସ୍ଥାନ ଓ ସ୍ଥିତାବସ୍ଥା ବଜାୟ ରକ୍ଷାର ପଦ୍ଧତି ଗ୍ରହଣ କରାଗଲା।

ଜମିଦାରୀ ପ୍ରଥାର ଉଚ୍ଛେଦ ଥିଲା ଭାରତୀୟ ଜନଗଣଙ୍କ ସହ ଆଉ ଏକ ପ୍ରହସନର ଖେଳ। ଜମିଦାର ଓ ଦେଶୀୟ ରାଜାଙ୍କର ହଜାର ହଜାର ଏକର ଜମି ଏବଂ ତା ସହ ବିଶାଳ ପ୍ରସାଦ ଏବଂ ଦୁର୍ଗକୁ ବ୍ୟକ୍ତିଗତ ସମ୍ପତ୍ତି ରୂପେ ଛାଡ଼ ଦିଆଗଲା। ଏହାପରେ ଭାରତ ସରକାର ଜମିଦାରୀ ପ୍ରଥା ଉଚ୍ଛେଦ ପାଇଁ ଶହ ଶହ କୋଟି ଟଙ୍କା ଜମିଦାରଙ୍କୁ କ୍ଷତିପୂରଣ ଭାବେ ଦେଇଛନ୍ତି। ତାର ସଠିକ୍ ହିସାବ ଅଦ୍ୟାବଧି ମିଳିନି। ଗୋଟିଏ ତଥ୍ୟରୁ ଜଣାଯାଏ ଯେ ଏଇ କ୍ଷତିପୂରଣ ପରିମାଣ ଥିଲା ୬୭୦ କୋଟି ଟଙ୍କା। ଜଣାଯାଏ ଯେ ଏଇ ଜମିଦାରୀ ପ୍ରଥା ଉଚ୍ଛେଦର ପ୍ରହସନ ସାମାଜିକ ଓ ଅର୍ଥନୈତିକ ସମ୍ପର୍କର କୌଣସି ମୌଳିକ ପରିବର୍ତ୍ତନ ପାଇଁ କରାଯାଇନଥିଲା। ଜବାହାରଲାଲ ନେହେରୁ ୧୯୪୮ ମସିହା ଏପ୍ରିଲ୍ ମାସରେ ସାମ୍ବିଧାନିକ ସଭା ଅଧିବେଶନରେ କୌଣସି ପ୍ରକାର ମୌଳିକ ପରିବର୍ତ୍ତନ କରିବା ବିରୁଦ୍ଧରେ ତାଙ୍କର ଅଭିମତ ପ୍ରକାଶ କରିଥିଲେ। ସେ ସାମ୍ବିଧାନିକ ସଭାରେ କହିଥିଲେ ଯେ, କୌଣସି ପଦକ୍ଷେପ ନେବା ସମୟରେ ସତର୍କତା ଅବଲମ୍ବନ କରିବାକୁ ହେବ ଯେ, "ଯେପରି ପ୍ରଚଳିତ ଢାଞ୍ଚାର ବିଶେଷ କ୍ଷତି ନଘଟେ - ମୁଁ ଅଧିକ ପରିବର୍ତ୍ତନ ସାଧନ ପାଇଁ ପଦକ୍ଷେପ ନେବା ପାଇଁ ସାହାସ ଓ ଦୃଢ଼ତା ଦେଖାଇ ପାରୁନାହିଁ।" "ଆମଦେଶର ପ୍ରଥମ ପ୍ରଧାନମନ୍ତ୍ରୀଙ୍କର ଏହି ମୌଳିକ ଘୋଷଣା, ଭାରତୀୟ ବୁର୍ଜୁଆ ଶ୍ରେଣୀ ଓ ତାଙ୍କର ପ୍ରତିନିଧିମାନଙ୍କ ସହ ସାମ୍ରାଜ୍ୟବାଦ ଓ ସାମନ୍ତବାଦର ବ୍ୟବସାୟ ଭିତ୍ତିକ ଚୂକ୍ତିର ଏକ ସ୍ପଷ୍ଟ ଅଭିବ୍ୟକ୍ତି।"

## ବିଦେଶୀ ପୁଞ୍ଜି ସହ ଘୃଣ୍ୟ ବୁଝାମଣା

ସାମ୍ବିଧାନିକ ସଭାରେ (Constituent Assembly) ସରକାର ବିଭିନ୍ନ ନିଷ୍ପତ୍ତି ଗ୍ରହଣ ପ୍ରକ୍ରିୟାରେ ରାଜ୍ୟଗୋଷ୍ଠୀ ସମୂହ ଦେଶ ଭିତରେ ରହିବାର ସିଦ୍ଧାନ୍ତ ନେଇ ଲାହୋର କଂଗ୍ରେସରେ ନିଆଯାଇଥିବା "ପୂର୍ଣ୍ଣ ସ୍ୱରାଜ" ପ୍ରସ୍ତାବକୁ ସମ୍ପୂର୍ଣ୍ଣ ନାକଚ କଲା। ବିଦେଶୀ ପୁଞ୍ଜି ସଂପୂର୍ଣ୍ଣ ବାଜ୍ୟାପ୍ତ ହେବାର ଆଶଂକା ଦୂର କରାଗଲା। ୧୯୪୮ ମସିହା ଫେବୃୟାରୀ ୧୭ ତାରିଖରେ ପ୍ରଧାନ ମନ୍ତ୍ରୀ ନେହେରୁ ଘୋଷଣା କଲେ, "ଅର୍ଥନୈତିକ ବ୍ୟବସ୍ଥାର ହଠାତ୍ କୌଣସି ପରିବର୍ତ୍ତନ କରାଯିବ ନାହିଁ। ଯେତେଦୂର ସମ୍ଭବ ବର୍ତ୍ତମାନ ଶିଳ୍ପ ପ୍ରତିଷ୍ଠାନ ଗୁଡ଼ିକର କୌଣସି ପ୍ରକାର ଜାତୀୟ-କରଣ କରାଯିବ ନାହିଁ।" ନିର୍ଦ୍ଦିଷ୍ଟ ଭାବେ କହିବାକୁ ହେଲେ ବିଦେଶୀ ଲଗାଣ ପୁଞ୍ଜି (Fiance Capital) ଓ ତାର ପ୍ରତିନିଧିତ୍ୱକାରୀ ବ୍ରିଟିଶ୍ ସରକାରକୁ ଏହି ପ୍ରକାର ଆଶ୍ୱାସନା ଦିଆଗଲା ଯେ, ଭାରତୀୟ ଜନଗଣଙ୍କ ଉପରେ ଶୋଷଣ ଚଳାଇ ସର୍ବୋଚ୍ଚ ହାରରେ ମୁନାଫା ଲୁଟିବା ପାଇଁ, ଭାରତୀୟ ବୁର୍ଜୁଆ ତା ସହ ସବୁପ୍ରକାର ସହଯୋଗ କରିବା ପାଇଁ ପ୍ରସ୍ତୁତ ଅଟେ।

ବିଦେଶୀ ପୁଞ୍ଜିପତିମାନଙ୍କ ମନରେ ଯେପରି ବିନ୍ଦୁମାତ୍ର ଆଶଙ୍କା ନ ରୁହେ ସେଥିପାଇଁ ୧୯୪୮ ମସିହା ଏପ୍ରିଲ୍ ୬ ତାରିଖରେ ଅର୍ଥନୈତିକ ନୀତି ସଂକ୍ରାନ୍ତ ସରକାରୀ ପ୍ରସ୍ତାବ ପ୍ରକାଶିତ ହେଲା। ଏହି ପ୍ରସ୍ତାବରେ କୁହାଗଲା ଅସ୍ତ୍ରଶସ୍ତ୍ର, ରେଳ, ବିଦ୍ୟୁତ ଓ ଆଣବିକ ଶକ୍ତି

ଭଳି କ୍ଷେତ୍ରକୁ ଛାଡ଼ି ଅନ୍ୟ ସମସ୍ତ ଶିଳ୍ପ କ୍ଷେତ୍ରରେ ବେସରକାରୀ ଉଦ୍ୟୋଗପତିମାନଙ୍କ ପାଇଁ, ଅର୍ଥାତ୍ ବର୍ତ୍ତମାନ ଏକଚାଟିଆ ପୁଞ୍ଜିପତିମାନଙ୍କ ସହ ସାମ୍ରାଜ୍ୟବାଦୀ ଲଗାଣ ପୁଞ୍ଜି (Fiance Capital) ପାଇଁ ପଥ ଉନ୍ମୁକ୍ତ ରଖାଯିବ। ସରକାରୀ ନୀତିକୁ ଆହୁରି ସୁସ୍ପଷ୍ଟ ଭାବେ ବ୍ୟାଖ୍ୟା କରିବା ପାଇଁ ଏବଂ ସାମ୍ରାଜ୍ୟବାଦୀ ପୁଞ୍ଜିପତିମାନଙ୍କ ମନରେ ଯେଭଳି କୌଣସି ଭୟ ନ ରୁହେ ସେଥିପାଇଁ ଅର୍ଥନୈତିକ ନୀତିର ବ୍ୟାଖ୍ୟା ମୂଳକ ପ୍ରସ୍ତାବନା ପ୍ରକାଶ କରି କୁହାଗଲା ଯେ, "ଭାରତୀୟ ଶିଳ୍ପରେ ବିଦେଶୀ ପୁଞ୍ଜି ଓ ପ୍ରତିଷ୍ଠାନର ପୂର୍ଣ୍ଣ ସ୍ୱାଧିନତାର ପ୍ରତିଶ୍ରୁତି ଦେବା ସହ ଜାତୀୟ ସ୍ୱାର୍ଥ ପାଇଁ ତାହା ନିୟନ୍ତ୍ରଣ କରାହେବ। ପ୍ରସ୍ତାବନାର ଏଇ ଅଂଶରୁ ପରିଷ୍କାର ବୁଝାଗଲା ଯେ, ଭାରତ ସରକାର ଶିଳ୍ପ ବ୍ୟବସ୍ଥାପନା, କାରିଗରୀ ପ୍ରଶିକ୍ଷଣ ଓ ବିନିଯୋଗରେ ବିଦେଶୀ ସାହାଯ୍ୟ ନେବାର ପ୍ରୟୋଜନକୁ ଅନୁମୋଦନ କରୁଛି ଏବଂ ଭାରତୀୟ ଉଦ୍ୟୋଗରେ ସାହାଯ୍ୟ ପାଇଁ ବିଦେଶୀ ପୁଞ୍ଜି ଓ ଦକ୍ଷତା ଆହ୍ୱାନ କରୁଛି।"

ସବୁଠାରୁ 'ସମ୍ମାନିତ' 'ପ୍ରଗତିଶୀଳ' 'ସମାଜବାଦୀ' ଭାରତରତ୍ନ ନେହେରୁଙ୍କର ନେତୃତ୍ୱରେ ଭାରତ ସରକାରଙ୍କର ନୀତିହେଲା "ଭାରତୀୟ ଶିଳ୍ପରେ ବିଦେଶୀ ପୁଞ୍ଜି ଓ ପ୍ରତିଷ୍ଠାନ ଗୁଡ଼ିକର ଅବାଧ ପ୍ରବେଶର ଅଧିକାର।"

ମୁଁ ଆଶାକରେ, ଅଦାଲତ ବର୍ତ୍ତମାନ ସ୍ପଷ୍ଟଭାବେ ବୁଝିପାରୁଥିବ ଯେ କାହିଁକି ଓ କେଉଁ ଉଦ୍ଦେଶ୍ୟରେ ୧୯୭୧ ମସିହାରେ ମୋତେ ୧୮୬୦ମସିହାର ତତ୍କାଳୀନ ଔପନିବେଶିକ ସରକାରଙ୍କ ଦ୍ୱାରା ଜାରିକରାଯାଇଥିବା ଏପରି ଗୋଟିଏ ଆଇନ ବଳରେ ଅଭିଯୁକ୍ତ କରି ଅଦାଲତକୁ ଅଣାଯାଇଛି। ଏଇଟା ସ୍ପଷ୍ଟଯେ ସାମ୍ରାଜ୍ୟବାଦୀ ପୁଞ୍ଜି, ସହଯୋଗୀ ଭାରତୀୟ ବୁର୍ଜୁଆ ଓ ସାମନ୍ତବାଦୀ ସ୍ୱାର୍ଥର ପ୍ରୟୋଜନ ପାଇଁ ସମାଜ ବ୍ୟବସ୍ଥାର କିଛି ନିର୍ଦ୍ଦିଷ୍ଟ ପରିଚାଳନା କ୍ଷେତ୍ରରେ ଆଂଶିକ ପରିବର୍ତ୍ତନ ଛଡ଼ା ଆଉ କୌଣସି ପରିବର୍ତ୍ତନ ହୋଇନାହିଁ। ବ୍ୟବସ୍ଥାର କିଛି ବାହ୍ୟିକ ପରିବର୍ତ୍ତନ ଘଟିଥିଲେ ମଧ୍ୟ ମୂଳଗତ ଭାବେ ତାହା ଅପରିବର୍ତ୍ତିତ ରହିଛି।

ସ୍ୱାଧୀନତା ନାମରେ ଯେଉଁ ନୂତନ ସରକାର ଗଠିତ ହେଲା ତାର ବୈଶିଷ୍ଟ୍ୟ ହେଲା ପୁରାତନ ଶାସନ ବ୍ୟବସ୍ଥା, ପୁରାତନ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା, ସାମ୍ରାଜ୍ୟବାଦର ସେଇ ଏକା ଶାସନତନ୍ତ୍ର, ପୂର୍ବତନ ଅମଲାତନ୍ତ୍ର, ବିଚାର୍ ବ୍ୟବସ୍ଥା ଓ ପୁଲିସ ପ୍ରଶାସନ ସବୁକିଛିକୁ ଅବ୍ୟାହତ ରଖିବା। ବିସ୍ମୟକର କଥା ଏହି ଯେ, ସାମ୍ରାଜ୍ୟବାଦୀମାନେ ଯେଉଁ ଆଇନି ବଳରେ ବିପ୍ଳବୀ ଜାତୀୟ ମୁକ୍ତି ଆନ୍ଦୋଳନକୁ ଦମନ କରିବା ପାଇଁ ବ୍ୟବହାର କରୁଥିଲେ, ଆଜି ସେଇ ଏକା ଆଇନି ବଳରେ ମୋତେ ଅଭିଯୁକ୍ତ କରି ଏଇ ଅଦାଲତରେ ହାଜର କରାଯାଇଛି।

ଜବାହାରଲାଲ ନେହେରୁ ତାଙ୍କ କ୍ଷମତାରେ ଆସୀନ ହେବାର ୧୪ ବର୍ଷ ପୂର୍ବରୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ କହିଥିଲେ, "ବିଦେଶୀ ସରକାର ପରିବର୍ତ୍ତେ ଯଦି କେଉଁ ଦେଶୀ ସରକାର ପ୍ରତିଷ୍ଠିତ ହୁଏ ଏବଂ ସକଳ ପ୍ରକାର ନ୍ୟସ୍ତ ସ୍ୱାର୍ଥକୁ ଅପରିବର୍ତ୍ତିତ ରଖାଯାଏ

ତେବେ ତାକୁ ସ୍ୱାଧୀନତାର- ଛାୟା ବି କୁହାଯିବ ନାହିଁ।" (Wither India 1933)

କିନ୍ତୁ ଗୋଟିଏ ଦିଗରେ ଲୋକଙ୍କୁ ଠକିବା ପରି ଲୋକ ଦେଖାଣିଆ ବାକଚାତୁରୀ ଓ ଅନ୍ୟଦିଗରେ ରକ୍ଷଣଶୀଳ ଏବଂ ପ୍ରତିକ୍ରିୟାଶୀଳ ପଦକ୍ଷେପ - ଏହା ହିଁ ହେଲା ବୁର୍ଜୁଆର ନୀତି। 'ସ୍ୱାଧୀନତା' ପ୍ରାପ୍ତିର ଅଳ୍ପକାଳ ମଧ୍ୟରେ ଏଇ ବିଶ୍ୱାସ ଘାତକତା ଓ ଷଡ଼ଯନ୍ତ୍ରର ସର୍ବଶେଷ ପରିଣତି ହେଲା ସାମ୍ବିଧାନିକ ସଭା ଗଠନ ଓ ତା ଦ୍ୱାରା ଅନୁମୋଦିତ ସମ୍ବିଧାନ। ତେଣୁ ଭାରତୀୟ ସମ୍ବିଧାନ ହିଁ ହେଲା ଭାରତୀୟ ଜନଗଣଙ୍କ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ ଘାତକତାର ଏକ ପ୍ରତିମୂର୍ତ୍ତି।

## ସାମ୍ବିଧାନିକ ପରିଷଦ ଓ ଭାରତର ସମ୍ବିଧାନ

ସାମ୍ବିଧାନିକ ପରିଷଦର ଇତିହାସ ହେଲା ଆମଦେଶର ଜନଗଣଙ୍କର ସାମ୍ରାଜ୍ୟବାଦ ଓ ସାମନ୍ତବାଦ ବିରୋଧୀ ମନୋଭାବ ପ୍ରତି ଏକ ଚମତ୍କାର ବିଶ୍ୱାସ ଘାତକତା। ଯେଭଳି ଭାବରେ ସାମ୍ବିଧାନିକ ପରିଷଦକୁ ରୂପ ଦିଆଗଲା ତାହା ହେଲା ଏକ ନୈରାଜ୍ୟବାଦୀ ପଦ୍ଧତି ଓ ଅସାମଞ୍ଜସ୍ୟ ପୂର୍ଣ୍ଣ। ୧୯୩୫ ମସିହାର ଭାରତ ସରକାରଙ୍କ ଆଇନି ଭିତ୍ତିରେ ସାମ୍ବିଧାନିକ ପରିଷଦର ସଦସ୍ୟମାନେ ନିର୍ବାଚିତ ହୁଅନ୍ତି- ଏଥିରେ ଶତକଡ଼ା ୯୦ଭାଗ ଶ୍ରମିକ ଓ କୃଷକଙ୍କୁ ଭୋଟଅଧିକାର ଦିଆଯାଇନଥାଏ। ଏ ପରି କି ସୀମିତ ନିର୍ବାଚନ ମଣ୍ଡଳୀ ଦ୍ୱାରା ସାମ୍ବିଧାନିକ ପରିଷଦର ସମସ୍ତ ସଦସ୍ୟ ପ୍ରତ୍ୟକ୍ଷ ଭୋଟରେ ନିର୍ବଚିତ ହୁଅନ୍ତି ନାହିଁ। ରାଜ୍ୟ ବିଧାନ ସଭା ଓ ପରିଷଦର ସଦସ୍ୟମାନଙ୍କୁ ନେଇ ଗୋଟିଏ ଲେଖାଏଁ ନିର୍ବାଚିତ କଲେଜ ଗଠିତ ହୁଏ ଏବଂ ନିଜ ନିଜ ରାଜ୍ୟରୁ କିଛି ସଦସ୍ୟଙ୍କୁ ନିର୍ବାଚିତ କରାଯାଏ। ସାମ୍ବିଧାନିକ ସଭାକୁ କିଛି ସଭ୍ୟଙ୍କୁ ମଧ୍ୟ ମନୋନୀତ କରାଯାଏ। କାର୍ଯ୍ୟତଃ ଏହି ପରିଭାବରେ ନବ ଗଠିତ ସାମ୍ବିଧାନିକ ପରିଷଦ, ସ୍ୱାଧୀନଦେଶର ଜନଗଣଙ୍କର 'ସାମ୍ବିଧାନିକ ପରିଷଦ' ଯେପରି ଭାବରେ ଗଠିତ ହେବା ଉଚିତ୍ ତାର ଗୋଟିଏ ହେଲେ ବୈଶିଷ୍ଟ୍ୟକୁ ଅନୁସରଣ କଲା ନାହିଁ।

ମାର୍କ୍ସ ଯେପରି ୧୮୫୨ ମସିହାରେ ଜର୍ମାନ ଡାୟୋଟ୍‌କୁ (German diet) "ଜାରଜ ସନ୍ତାନ" ବୋଲି କହିଥିଲେ, ସେହିପରି ଭାରତର ପୁରୁଣା ଉପନିବେଶିକ ସମ୍ବିଧାନ ସହ ଅବୈଦ୍ଧ ଯୌନ ସମ୍ପର୍କ ଫଳରେ ଜନ୍ମଲାଭ କରିଥିବା ଭାରତର ସମ୍ବିଧାନକୁ ଜାରଜ ବୋଲି କୁହାଯାଇପାରେ। ଯିଏ ଅନେକ ଆଗରୁ ତାର କୌମାରତ୍ୱ ବିସର୍ଜନ କରିସାରିଛି ଏବଂ ତରୁଣ ଦେଖାଗଲେ ମଧ୍ୟ ଇତି ମଧ୍ୟରେ କେଶ ରାଶିରେ ପକ୍ୱତା ଆସିଛି। ଫମ୍ପା ବାକ୍‌ଚତୁରୀର ଫନ୍ଦି ଫିକର ଓ କୂଟନୈତିକ ବେଶ୍ୟା ବୃତ୍ତିରେ ଅଭିଜ୍ଞ ହୋଇଉଠିଛି। ତାହା ବ୍ରିଟିଶ୍ ଶିକ୍ଷା ଓ ସଂସ୍କୃତିରେ ପରିପୁଷ୍ଟ ଉଦାରବାଦୀ ଆଟର୍ଣ୍ଣି ଏବଂ ତତ୍ୱବାଦୀ ଅଧ୍ୟାପକମାନଙ୍କର ଏକ ସଭା ମାତ୍ର। ଏଇ ଭାବନା ଯେପରି ଦେଶାତ୍ମବୋଧରେ ଅନୁପ୍ରାଣିତ ଭାରତୀୟ ବୌଦ୍ଧିକ ସତ୍ତାର ନିର୍ଯ୍ୟାସକୁ ପ୍ରତିନିଧିତ୍ୱ କରୁଛି ସେହିପରି ବୃଦ୍ଧ ଓ ଦୁର୍ବଳଚିତ୍ତ ରାଜନୈତିକ ବ୍ୟକ୍ତିମାନେ

ତାଙ୍କର ଅକ୍ଷମ ଚିନ୍ତା ଓ କାର୍ଯ୍ୟକ୍ରମର ହିଁ ଏଠାରେ ପରିପ୍ରକାଶ କରିଛନ୍ତି। ଦୁଇ ବର୍ଷଧରି ତତ୍ୱଗତ ଭାବେ ମୂଲ୍ୟହୀନ ବିତର୍କ ଚଳାଇ ଏହି ଆକର୍ମଣ୍ୟ ସଭା ଏପରି ଏକ ସମ୍ବିଧାନ ସୃଷ୍ଟିକଲା ଯାହା ୧୯୩୫ ମସିହାର ସମ୍ବିଧାନ ସହ ଆଶ୍ଚର୍ଯ୍ୟ ଜନକ ଭାବେ ମେଳ ଖାଉଛି। ସ୍ୱାଧିନ ଭାରତର ତଥାକଥିତ ସମ୍ବିଧାନ ୧୯୩୫ ମସିହାର ସମ୍ବିଧାନ ସହ ମେଳଖାଇଯିବା କ'ଣ ଆଶ୍ଚର୍ଯ୍ୟ ଜନକ ବିଷୟ ନୁହେଁ?(Asian Drama, page- 266)

ଯେତେବେଳେ ଶାସକ ଶ୍ରେଣୀ ଦେଶର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ସ୍ଥିତାବସ୍ଥା ବଜାୟ ରଖିବା ସହ, ଅର୍ଥନୈତିକ ଢାଞ୍ଚାର ହଠାତ୍ କୌଣସି ପରିବର୍ତ୍ତନ ନକରିବାର ନିଷ୍ପତ୍ତି ନେଲା, ସେଠାରେ ପ୍ରଚଳିତ ସମ୍ବିଧାନ ଛଡ଼ା, ଅନ୍ୟ କୌଣସି ମୌଳିକ ଭାବରେ ନୂଆ ସମ୍ବିଧାନ ତିଆରିକରିବା ସମ୍ଭବ ନଥିଲା। ଶାସକ ଶ୍ରେଣୀ ଓ ତାର ଦଲାଲମାନେ ଜନସାଧାରଣଙ୍କୁ ଏହି ସମ୍ବିଧାନ ଅତ୍ୟନ୍ତ ପବିତ୍ର ବୋଲି ବିଶ୍ୱାସ କରିବାକୁ କହିବା ହିଁ ପ୍ରତାରିତ କରିବା। ବୁର୍ଜୁଆ ଅବଶ୍ୟ ଜାଣେ ଯେ ସେ ଭାରତୀୟ ସମ୍ବିଧାନ ହିସାବରେ ଯାହା, ଗ୍ରହଣ କଲା ତାହା ପ୍ରକୃତରେ କ'ଣ।

ଏଇ ନୂତନ ସମ୍ବିଧାନରୁ ଅନ୍ୟତମ ସ୍ଥପତି ଆହ୍ଲାଦୀ କୃଷ୍ଣସ୍ୱାମୀ ଆୟାର - ସାମ୍ବିଧାନିକ ପରିଷଦରେ ଘୋଷଣା କଲେ ଯେ ଆମେ ବିପ୍ଳବ ପରେ କୌଣସି ନୂତନ ସମ୍ବିଧାନ ରଚନା କରିନାହୁଁ। ଏତେଦିନ ଯେଉଁ ପ୍ରଶାସନିକ ବ୍ୟବସ୍ଥା କାର୍ଯ୍ୟ କରିଆସୁଛି ତାକୁ ପୁରାପୁରି ପ୍ରତ୍ୟାଖ୍ୟାନ କରାଯାଇପାରିବ ନାହିଁ। "(Indian economy since independence by H. Venkat subbaiah page- 29) ଅର୍ଥାତ୍ ଯେତେବେଳେ ବର୍ତ୍ତମାନର ସାମାଜିକ, ଅର୍ଥନୈତିକ ଓ ପ୍ରଶାସନିକ ବିଧିବ୍ୟବସ୍ଥା ପୂର୍ବ ଭଳି ଚାଲୁରହିଛି ସେତେବେଳେ ପ୍ରଚଳିତ ସମ୍ବିଧାନ ପରିବର୍ତ୍ତେ ନୂତନ ଧରଣର ସମ୍ବିଧାନ ରଚନା ଅସମ୍ଭବ। ସମ୍ବିଧାନ ପ୍ରଣେତାମାନଙ୍କ ପାଖରେ ଏହାହିଁ ସୁସ୍ପଷ୍ଟ ଥିଲା। କିନ୍ତୁ ଜନଗଣଙ୍କୁ ବୋକା ବନାଇବା ପାଇଁ ସଂବିଧାନରେ ଜନସାଧାରଣଙ୍କର ବାମପନ୍ଥୀ ମନଭାବର ପ୍ରତିଫଳନ ହୋଇଥିବାର ଆଳଦେଖାଇ ରଷ୍ଟ୍ରନୀତିର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ନିୟାମକ ତତ୍ତ୍ୱକୁ, ଏଥିରେ ସଂଯୋଗ କରାଗଲା। କାରଣ ଅପସାରିତ ହେଇଯାଇଥିବା ବ୍ରିଟିଶ୍ ରାଜ୍‌ର ଶାସନଯନ୍ତ୍ର ସଦୃଶ୍ୟ ଏକାପ୍ରକାର ଅନୁଭୂତ ହେଉଥିବା ଏହି ଶାସନଯନ୍ତ୍ରର ଭିନ୍ନତାକୁ ପ୍ରତିପାଦିତ କରିବାପାଇଁ ଜନଗଣଙ୍କର ବିପ୍ଳବୀ ଆକାଂକ୍ଷାଗୁଡ଼ିକୁ ସଂବିଧାନରେ ସଂଯୋଗ କରିବା ବାଞ୍ଛନୀୟ ଥିଲା। ('H. Venkatasubbiah: Indian Economy Science Independence' by page-29)

ବସ୍ତୁତଃ ଏଇ ସମ୍ବିଧାନ, ବ୍ରିଟିଶ୍ ସାମ୍ରାଜ୍ୟବାଦ ଦ୍ୱାରା ଅତ୍ୟନ୍ତ ଯତ୍ନ ଓ ଶ୍ରମରେ ତିଆରି କରାଯାଇଥିବା ଭିତ୍ତିଭୂମି ଉପରେ ନିର୍ମିତ ଏକ ଅଟ୍ଟାଳିକା ବ୍ୟତୀତ ଅନ୍ୟକିଛି ନୁହେଁ। ପ୍ରଚଳିତ ପ୍ରଶାସନିକ କାର୍ଯ୍ୟ ପଦ୍ଧତି ଓ ତାର ଆଇନି କାନୁନ୍‌କୁ ବିଧିସମ୍ମତ କରିବା

ଥିଲା ଏଇ ସମ୍ବିଧାନର ଲକ୍ଷ୍ୟ। ଏହାର ଉଦ୍ଦେଶ୍ୟ ଥିଲା ପ୍ରଚଳିତ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାକୁ ସୁଦୃଢ଼ କରିବା। ତେଣୁ ଏଇ ସମ୍ବିଧାନ ହେଲା ତଥାକଥିତ ଜାତୀୟ ନେତୃତ୍ୱର ପ୍ରତିନିଧିତ୍ୱରେ ଭାରତୀୟ ଜନଗଣଙ୍କ ପ୍ରତି ବିଶ୍ୱାସଘାତକତାର ଚୂଡ଼ାନ୍ତ ପ୍ରତିମୂର୍ତ୍ତି। ଏହିପରି ଭାବରେ ସମ୍ବିଧାନକୁ ବିଧିବଦ୍ଧ କରି ଭାରତୀୟ ବୁର୍ଜୁଆ ପୂର୍ବରୁ ଜନଗଣଙ୍କ ମନରେ ଧାରଣା ସୃଷ୍ଟିକରିଥିବା ଏକ ନୂତନ ରଷ୍ଟ୍ର ନିର୍ମାଣର ଭୂମିକା ଉପରେ ଗୁରୁତ୍ୱ ନଦେଇ ଭାରତର ଶାସନ କ୍ଷମତା ନିଜ ହାତକୁ ନେଲା।

ଏଇ ପରିସ୍ଥିତି ମଧ୍ୟରେ ସହଜାତ କ୍ରମ ବର୍ଦ୍ଧମାନ ଦ୍ୱନ୍ଦ୍ୱଫଳରେ ଯେଉଁ ସାମାଜିକ ବିପ୍ଳବ ଦେଖା ଯାଏ, ସେଇ ବିପଦର ସମ୍ଭାବନାକୁ ସମ୍ବିଧାନର କିଛି ବୁଦ୍ଧିମାନ ପ୍ରଣେତାଙ୍କ ମଧ୍ୟରେ କେହି କେହି ଜାଣିପାରିଥିଲେ। ସମ୍ବିଧାନ ଗୃହୀତ ହେବାର ଠିକ୍ ପୂର୍ବରୁ ସାମ୍ବିଧାନିକ ପରିଷଦର ସଭାପତି ରାଜେନ୍ଦ୍ର ପ୍ରସାଦ ଘୋଷଣା କଲେ, "ଆମ ସମ୍ବିଧାନରେ ଯେଉଁ ସବୁ ଧାରା ରହିଛି, ତାହା କାହାରି ପାଇଁ କୌଣସି ନା କୌଣସି ଦୃଷ୍ଟିରୁ ଆପତ୍ତିଜନକ ମନେ ହୋଇପାରେ। ଆମକୁ ମାନିବାକୁ ହେବ ଯେ ବର୍ତ୍ତମାନ ପରିସ୍ଥିତିରେ ଆମ ଦେଶ ତଥା ଜନଗଣଙ୍କ ମଧ୍ୟରେ ଏସବୁ ତ୍ରୁଟି ସହଜାତ ଭାବେ ରହିଅଛି।"

ଏଇ ପରିସ୍ଥିତିରେ ସେହି ସହଜାତ ବିଷୟଟି କ'ଣ ଓ ସେଥିରେ କ'ଣ ଘଟିପାରେ ? ଆମ୍ବେଦକର ଯିଏ ସମ୍ବିଧାନ ରଚନାର କର୍ଣ୍ଣଧାର ଏବଂ ଚିଠା କମିଟିର ଚେୟାରମ୍ୟାନ ଥିଲେ, ସେ ସମ୍ବିଧାନର ତୃତୀୟ ପାଠ ସମୟରେ ସାମ୍ବିଧାନିକ ପରିଷଦରେ ୧୯୪୯ ମସିହା ନଭେମ୍ବର ୨୫ ତାରିଖରେ ଏଇ ବିତର୍କର ଜବାବ ଦେଇ ଆହୁରି ସ୍ପଷ୍ଟ କରିଥିଲେ। ସେ କହିଥିଲେ "୧୯୫୦ ମସିହା ଜାନୁୟାରୀ ୨୬ ତାରଖରେ ଆମେ ଏକ ଦ୍ୱନ୍ଦ୍ୱାତ୍ମକ ଜୀବନରେ ପ୍ରବେଶ କରିବାକୁ ଯାଉଛୁ। ରାଜନୀତି କ୍ଷେତ୍ରରେ ଆମର ସମତା ରହିଛି କିନ୍ତୁ ଅର୍ଥନୈତିକ କ୍ଷେତ୍ରରେ ରହିଛି ଅସାମ୍ୟ। ରାଜନୈତିକ କ୍ଷେତ୍ରରେ ଜଣେ ମଣିଷର ଗୋଟିଏ ଭୋଟ ଓ ତାର ଏକ ମୂଲ୍ୟକୁ ସ୍ୱୀକୃତି ଦେବୁ। କିନ୍ତୁ ଆମର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା କାରଣରୁ ନୀତି ହିସାବରେ ଗୋଟିଏ ମଣିଷ ଗୋଟିଏ ମୂଲ୍ୟ ନୀତିକୁ ଆମେ ଅସ୍ୱୀକାର କରିଚାଲିଛେ। ଯେତେ ଶୀଘ୍ର ହୋଇପାରେ ଆମର ଏଇ ଦ୍ୱନ୍ଦ୍ୱକୁ ସମାଧାନ କରିବାକୁ ହେବ, ନଚେତ୍ ଯେଉଁମାନେ ଏଇ ଅସାମ୍ୟର ଶିକାର ହେଉଛନ୍ତି, ସେମାନେ, ଆମେ ଏତେ ଶ୍ରମଦେଇ ରଚନା କରିଥିବା ଏହି ରାଜନୈତିକ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଧ୍ୱଂସ କରିଦେବେ।"

କାର୍ଯ୍ୟତଃ ସମ୍ବିଧାନଟି ଥିଲା ତତ୍‌କାଳୀନ ସାମାଜିକ ବ୍ୟବସ୍ଥାରେ ଥିବା ଦ୍ୱନ୍ଦ୍ୱରାଜିରେ ପରିପୂର୍ଣ୍ଣ। ସାମ୍ରାଜ୍ୟବାଦୀ ଓ ସାମନ୍ତବାଦୀ ଶୋଷଣରେ ଜର୍ଜରିତ ବର୍ତ୍ତମାନର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାକୁ ବଞ୍ଚାଇରଖିବା ଉଦ୍ଦେଶ୍ୟରେ ହିଁ ଏହି ସଂବିଧାନ ରଚନା ହୋଇଥିଲା। ସମ୍ବିଧାନର ନୀତି ନିୟାମକ ଧାରା, "ଜନଗଣଙ୍କର ବିଦ୍ରୋହର କ୍ଷମତାକୁ

ଭୟକରି ଲିପିବଦ୍ଧ କରାଯାଇଥିଲା। ଏହା ଉତ୍କୋଚ ଛଡ଼ା ଆଉ କିଛି ନୁହେଁ।"
(H. Venkata subbaiah 'Indian economy since independence')

ହିଂସ୍ର ଅଭ୍ୟୁତ୍‌ଥାନର ଆଶଙ୍କାରେ ଆତଙ୍କିତ ଆଇନ ରଚୟିତାମାନେ ବାଧହୋଇ ଜନଗଣଙ୍କ ଉଦ୍ଦେଶ୍ୟରେ ଯେଉଁ ସବୁ ରାଷ୍ଟ୍ରନୀତିର ନିୟାମକ ତତ୍ତ୍ୱ ଗୁଡ଼ିକୁ ସମ୍ବିଧାନରେ ଅନ୍ତର୍ଭୁକ୍ତ କରିଥିଲେ ସେଇସବୁ ନୀତିକୁ କାର୍ଯ୍ୟକାରୀ କରିବାର କ୍ଷମତା ବା ସୁନିର୍ଦ୍ଦିଷ୍ଟ ଭାବରେ ତାକୁ ବ୍ୟବହାର କରିବା ପାଇଁ ଅନୁମୋଦନ କରିବା ପରିବର୍ତ୍ତେ ସାମ୍ରାଜ୍ୟବାଦ ଓ ସାମନ୍ତବାଦର ଧାରାବାହିକ ଲୁଟ୍ ସହ ସମସ୍ତ ପ୍ରକାର ଶୋଷଣ ବ୍ୟବସ୍ଥାକୁ ସୁରକ୍ଷିତ ରଖିବାପାଇଁ ବ୍ୟବସ୍ଥା କରାଯାଇଥିଲା।

## ସିଦ୍ଧାନ୍ତ

ଏହି ଭଳି ଆମେ ଦେଖିଲେ ଯେ ଭାରତୀୟ ଜନଗଣଙ୍କର ଜାତୀୟ ମୁକ୍ତି ଆନ୍ଦୋଳନ ସମ୍ମୁଖରେ ପଡ଼ି, ବ୍ରିଟିଶ୍ ଉପନିବେଶବାଦୀମାନେ, ବୃହତ୍ ବୁର୍ଜୁଆ ଓ ବୃହତ୍ ଜମିଦାରଙ୍କ ସହ ସାଲିସ କରି ଏକ ଗୋପନ ବୁଝାମଣା ମାଧ୍ୟମରେ ତାଙ୍କର ଶାସନ ବ୍ୟବସ୍ଥାକୁ ଶେଷୋକ୍ତ ଦୁଇ ଶ୍ରେଣୀ ହାତରେ ଟେକିଦେଇ ତାଂର ଉପନିବେଶିକ ଅର୍ଥନୈତିକ ସ୍ୱାର୍ଥକୁ ମୂଳତଃ ଅକ୍ଷୁର୍ଣ୍ଣ ରଖି ପାରିଛନ୍ତି।

ମୋର ବିବୃତ୍ତି ମଧ୍ୟରେ ଅଦାଲତ ଦେଖିପାରୁଥିବେ ଯେ, ବିଦେଶୀ ବିନିଯୋଗକୁ କେବଳ ସୁରକ୍ଷା ପ୍ରଦାନ କରାଯାଇନି, ପରନ୍ତୁ ତାକୁ ଆହୁରି ଦୃଢ ସମୃଦ୍ଧ କରିବା ପାଇଁ ସୁଯୋଗ ଦିଆଯାଇଛି। ଯଦିଓ ସାମନ୍ତରାଜା ଜମିଦାରଙ୍କର କିଛି କିଛି ସୁଯୋଗ ସୁବିଧା ଉଚ୍ଛେଦ ହୋଇଛି, କିନ୍ତୁ ସାମନ୍ତବାଦୀ ଭୂମି ବ୍ୟବସ୍ଥା ତଥା ସାମନ୍ତବାଦୀ ଶ୍ରେଣୀସମ୍ପର୍କ ଓ ଜାତି ବ୍ୟବସ୍ଥାକୁ କେବଳ ରକ୍ଷାକରା ଯାଇନି ବରଂ କିଛି କିଛି କ୍ଷେତ୍ରରେ ତାକୁ ଆହୁରି ଶକ୍ତିଶାଳୀ କରାଯାଇଛି। ଏହାସହ ଯୁକ୍ତ ହୋଇଛି ସରକାରଙ୍କ କ୍ରମବର୍ଦ୍ଧମାନ ବିଦେଶୀ ସହାୟତା ଉପରେ ନିର୍ଭରଶୀଳତା। ସ୍ୱାଧୀନତା ଘୋଷଣାର ୨୫ ବର୍ଷ ପରେ ମଧ୍ୟ ଅର୍ଥନୈତିକ ସ୍ୱାଧିନତା ଏକ ମରିଚିକା ହୋଇ ରହିଯାଇଛି।

ଭାରତ ବର୍ଷ ଆଜି ଏକ ଅର୍ଦ୍ଧ ଉପନିବେଶିକ, ଅର୍ଦ୍ଧ ସାମନ୍ତତାନ୍ତ୍ରିକ ଦେଶ; ତେଣୁ ଗୁନାର ମିର୍ଡ଼ାଲଙ୍କ ଭାଷାରେ "ଏଇ ନାଟକର ଅଭିନୟ ଦ୍ରୁତ କ୍ଲାଇମାକ୍ସ ଦିଗରେ ଗତି କରୁଛି .... ଅର୍ଥନୈତିକ, ସାମାଜିକ, ରାଜନୈତିକ ଉତେଜନା କ୍ରମଶଃ ବଢ଼ିବାରେ ଲାଗିଛି"। "ଯେଉଁମାନେ ସରକାରୀ ଘୋଷଣା ଶୁଣନ୍ତି, ଖବର କାଗଜ ପଢ଼ନ୍ତି, ବିଭିନ୍ନ ସ୍ତରର ଲୋକଙ୍କ ସହ ଆଳାପ ଆଲୋଚନା କରନ୍ତି, ବେସରକାରୀ ଓ ସରକାରୀ କ୍ରିୟା ପ୍ରତିକ୍ରିୟାକୁ ଲକ୍ଷ୍ୟକରିପାରନ୍ତି, ଛଳନା ସହ ବାସ୍ତବତାର ତୁଳନା କରିପାରନ୍ତି, ଆଶ୍ୱାସନା ବାଣୀସହ ଆଶା ପୂରଣର ଫରକ ଲକ୍ଷ୍ୟ କରିପାରନ୍ତି, ପ୍ରଚେଷ୍ଟା ଓ ଲକ୍ଷ୍ୟ ପୂରଣର ମୂଲ୍ୟାୟନ କରନ୍ତି,

ଆଖିସାମ୍ନାରେ ଆସୁଥିବା ସବୁକିଛିରେ ଅସ୍ୱାଭାବିକ ବୈଷମ୍ୟ ଦେଖି ଯଥେଷ୍ଟ ଚିନ୍ତା ଓ ଭାବନା କରନ୍ତି, ସେମାନେ ଅବଶ୍ୟ ବୁଝିପାରନ୍ତି ଯେ ନିୟତି ନିର୍ଦ୍ଦିଷ୍ଟ ନକ୍ଷତ୍ର ପୁଞ୍ଜ ଭଳି ଏକ ଦୃଢ ପରିବର୍ତ୍ତନର ବିସ୍ଫୋରକ ସମ୍ଭାବନା ଏବଂ ତା ସହ ପରିବର୍ତ୍ତନ ପଥରେ କଠିନ ବୈଦେଶିକ ପ୍ରତିବନ୍ଧକତା ଓ ଆଭ୍ୟନ୍ତରୀଣ ପ୍ରଚଣ୍ଡ ବାଧା-ନିଷେଧ।" (Asian Drama page - 34 & 35)

ଏଇ ଉତ୍ତେଜନା ଆଜି ଚରମ ପର୍ଯ୍ୟାୟରେ ପହଞ୍ଚିଛି। ଫଳରେ ଆଇନି ଶୃଙ୍ଖଳା ରକ୍ଷା ଦାୟିତ୍ୱରେ ଥିବା ଭାରତୀୟ କର୍ତ୍ତୃପକ୍ଷଙ୍କ ପ୍ରତିନିଧିମାନେ, ବ୍ରିଟିଶ୍ ଶାସନାଧୀନରେ ଥିବା ସମୟ ଠାରୁ 'ସ୍ୱାଧୀନ' ଭାରତରେ ବନ୍ଧୁକ ଚଳାଇବା ପାଇଁ ବେଶୀ ଆଗ୍ରହୀ ଅଟନ୍ତି।

ଏ ଭଳି ଅବସ୍ଥାରେ ଅଦାଲତ ପାଖରେ ବ୍ୟାଖ୍ୟା କରି କହିବା ମୋର କର୍ତ୍ତବ୍ୟ ଯେ, କାହିଁକି ମୁଁ ଭାରତୀୟ ଜାତୀୟ ମୁକ୍ତି ସଂଗ୍ରାମ ଶେଷ ହୋଇନି ବୋଲି ମନେକରେ ଏବଂ ଆମେ ଜାତୀୟ ମୁକ୍ତି ସଂଗ୍ରାମର ପ୍ରତିନିଧିମାନେ ଆଜି ମଧ୍ୟ ବିଶ୍ୱାସ କରୁ ଯେ, ସେଇ ସଂଗ୍ରାମକୁ ଆହୁରି ଦୃଢ଼ ଓ ପରାକ୍ରମ ସହକାରେ ଆଗେଇ ନେବା ଭାରତୀୟ ଜନଗଣଙ୍କର କର୍ତ୍ତବ୍ୟ ଅଟେ।

କମ୍ରେଡ୍ ମାଓ ସେ ତୁଂ ଯେଭଳି ଘୋଷଣା କରିଥିଲେ, "ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ ସେତେବେଳେ ହିଁ ସମ୍ଭବ ହୋଇଛି ବୋଲି କୁହାଯିବ ଯେତେବେଳେ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ଏବଂ ଆଭ୍ୟନ୍ତରୀଣ ସାମନ୍ତବାଦୀ ଶକ୍ତିକୁ ମୂଖ୍ୟତଃ ଉତ୍‌ଖାତ କରାଯାଇପାରିଛି ଏବଂ ଏକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତିଷ୍ଠା କରାଯାଇଛି।"

"ଏଇ ଗଣତାନ୍ତ୍ରିକ ବିପ୍ଳବର ଲକ୍ଷ୍ୟ ହେଲା ଏପରି ଏକ ସାମାଜିକ ବ୍ୟବସ୍ଥା କରାଯିବ ....; ଏକ ଗଣତାନ୍ତ୍ରିକ ସମାଜ ହେଇଥିବ; ଯେଉଁ ସମାଜ ଅବସ୍ଥା ପୂର୍ବରୁ ଏକ ସାମନ୍ତବାଦୀ ସମାଜବ୍ୟବସ୍ଥା ଥିଲା (ଯାହା ବିଗତ ୧୦୦ ବର୍ଷ ଧରି ଥିଲା ଅର୍ଦ୍ଧ ଉପନିବେଶିକ ଓ ଅର୍ଦ୍ଧ ସାମନ୍ତବାଦୀ) ଏବଂ ଏଇ ସମାଜର ପରବର୍ତ୍ତୀ ଉତ୍ତରାଧିକାରୀ ହେବ ଏକ ସାମଜବାଦୀ ସମାଜ।"

(ମଇ ୪ ଆନ୍ଦୋଳନ)

